ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।

# ଉତ୍କଳ ସମ୍ମିଳନୀ

୧୩ଶ ଅଧିବେଶନର

## କାର୍ଯ୍ୟ ବିବରଣୀ ।



ଶ୍ରୀ ମଧୁସୂଦନ ଦାସ

ଅଭ୍ୟର୍ଥନା ସମିତିର ସମ୍ପାଦକ ।

PRINTED BY B. S. DAS,
MUKUR PRESS,
CUTTACK.
1919

ମୂଲ୍ୟ ଦୁଇଅଣା ମାତ୍ର ।

ସ୍ୱାର୍ଥମେଧ ଯଜ୍ଞ ପୂର୍ଣ୍ଣ ହେଉ ଜାତି ସ୍ୱତ୍ୱକୁ ମିଶାଅ ସ୍ୱତ୍ୱ ।

ଜାତି ପ୍ରେମବହ୍ନି ସନ୍ଧୁକ୍ଷଣ କର ସ୍ୱାର୍ଥକୁ ଦିଅ ଆହୁତି ।

Digitized by srujanika@gmail.com

# ଉତ୍କଳ ସମ୍ମିଳନୀ ସଞ୍ଚାର

## ତ୍ରୟୋଦଶ ଅଧିବେଶନ ।

ସନ ୧୯୧୮ ମସିହା । ମୁ । ସନ ୧୩୨୫ ସାଲ ।

ଖ୍ରୀଷ୍ଟାବ୍ଦ ୧୯୧୭ ଡିସେମ୍ବର ମାସର ଶେଷ ସପ୍ତାହରେ ଉତ୍କଳଜାତୀୟ ମହାସମ୍ମିଳନୀର ଅଧିବେଶନ ହେବାର କଥା । କିନ୍ତୁ ନାନା ଅସୁବିଧାବଶତଃ ତାହା ବଡ଼ଦିନଛୁଟିରେ ହୋଇ ନ ପାରି ଆଗାମୀ ଇଷ୍ଟରଛୁଟିରେ ହେବାର ସ୍ଥିର କରାଗଲା ।

ପ୍ରଥମେ ସନ ୧୯୧୭ ମସିହା ନଭେମ୍ବର ମାସ ତା ୯ ରିଖରେ ଅଭ୍ୟର୍ଥନା-ସମିତିର ଗୋଟିଏ ଅଧିବେଶନ ହେଲା । ଏହି ଅଧିବେଶନ ନିମନ୍ତେ ବିଭିନ୍ନ ଅଞ୍ଚଳର ଓ ମଫସଲର ଭଦ୍ରବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରା ଯାଇଥିଲା ଏବଂ ନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ ନିମ୍ନଲିଖିତ ସଭ୍ୟମାନେ ଉପସ୍ଥିତ ଥିଲେ ।

ମାନ୍ୟବର ରାଜାସାହେବ—କନିକା
ରାଜ ସାହେବ, ପଞ୍ଚକୋଟ, ଯାଜପୁର
ରାୟ ସୁଦାମଚରଣ ନାୟକ ବାହାଦୁର—କଟକ
ବାବୁ ଲକ୍ଷ୍ମୀଧର ମାହାନ୍ତି ବି; ଏଲ୍— ,,
,, ପଦନ ସାହୁ ,,
,, ରାମକୃଷ୍ଣ ପଟ୍ଟନାୟକ ବି; ଏଲ୍ ,,
,, ହରି ପ୍ରସାଦ ସିଂହ— ,,
,, ବିଚିତ୍ରାନନ୍ଦ ଦାସ ବି: ଏଲ ,,
,, ପାରେଶ୍ୱର ମହାନ୍ତି ବିଃ ଏଲ ,,
ରେଭରେଣ୍ଡ ବ୍ରଜାନନ୍ଦ ଦାସ ବି: ଏ ,,
ବାବୁ ବନମାଳୀ ଚୌଧୁରୀ ,,
,, ଦେବେନ୍ଦ୍ର ନାଥ ଦାସ, ଓକିଲ ,,
,, ହରିହର ପଣ୍ଡା ବି: ଏ: ଗଞ୍ଜାମ
,, ସଦାଶିବ ପଣ୍ଡା
,, କୁଲ ଧାର
,, ସଦାନନ୍ଦ ଦାସ କଟକ
,, ଅର୍ଜୁନ ନାୟକ
,, ନବକୁମାର ଦାସ ,,
,, ପ୍ରାଣକୃଷ୍ଣ ମିଶ୍ର
,, ଉଦୟନାଥ ଆଚାର୍ଯ୍ୟ ସିଦ୍ଧେଶ୍ୱର ପୁର
,, ବ୍ରଜନାଥ ମିଶ୍ର କଟକ

Digitized by srujanika@gmail.com

ବାବୁ ଅଗଣୀ ଦାଶ — କଟକ
,, ମାୟାଧର ଦାଶ—ଉକୀଲ — ,,
,, ଜଗନ୍ନାଥ ମିଶ୍ର — ଖଣ୍ଡସାହି—କଟକ
,, ଶ୍ୟାମାନନ୍ଦ ପଟ୍ଟନାୟକ — ଚଣାହଟା
,, ଭିଖାରୀଚରଣ ପଟ୍ଟନାୟକ, ଉକୀଲ, କଟକ
,, ନୃସିଂହ ଚରଣ ଚୌଧୁରୀ — ଯାଜପୁର
,, ନରେନ୍ଦ୍ର କୁମାର ପାଣ୍ଡ ବି: ଏ: — କଟକ
,, ଅନୁଗ୍ରହ ନାୟକ ବି: ଏ: — କଟକ
ପଣ୍ଡିତ ବ୍ରହ୍ମାନନ୍ଦ ଷଡ଼ଙ୍ଗୀ — କଟକ
ପଣ୍ଡିତ ପଦ୍ମଷିତ ଦାଶ — କଟକ
ମାନ୍ୟବର ମିଃ ମଧୁସୂଦନ ଦାସ ସି,ଆଇ,ଇ, — କଟକ

ସର୍ବସମ୍ମତିକ୍ରମେ ମାନ୍ୟବର ରାଜା ରାଜେନ୍ଦ୍ର ନାରାୟଣଭଞ୍ଜ ଦେଓ—ସଭାପତିର ଆସନ ଗ୍ରହଣ କରିଥିଲେ । ଉକ୍ତ ଅଧିବେଶନରେ ସର୍ବସମ୍ମତିକ୍ରମେ ପାରଳାଖେମିଡିର ଉପଯୁମାନ ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କୁ ସଭାପତି ନିର୍ବାଚନ କରାଯିବାର ସ୍ଥିର କରାଗଲା ! ଯଦି ପାରଳାର ରାଜାସାହେବ କୌଣସି କାରଣବଶତଃ ଅସମ୍ମତ ହୁଅନ୍ତି, ତାହାହେଲେ ଶେରଗଡ଼ର ମାନ୍ୟବର ରାଜାସାହେବ ଓ ତାଙ୍କ ଅସମ୍ମତିରେ ଉତ୍କଳର ବ୍ୟାସକବି ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଉକ୍ତ ପଦରେ ଅଭିଷିକ୍ତ ହେବେ ବୋଲି ପ୍ରସ୍ତାବିତ ହୋଇ ସର୍ବ ସମ୍ମତିକ୍ରମେ ଉକ୍ତ ପ୍ରସ୍ତାବ ଗୁଡ଼ିକ ଗୃହୀତ ହୋଇଥିଲା ।

ଉକ୍ତ ଅଧିବେଶନରେ ସର୍ବସମ୍ମତିକ୍ରମେ ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ନେଇ ଗୋଟିଏ କାର୍ଯ୍ୟ ନିର୍ବାହକ ସମିତି ଗଠିତ ହେଲା ଏବଂ ଉକ୍ତ ସମିତିରେ ଯେଉଁମାନେ ଯେଉଁ କର୍ମଗୃସ୍ୱ ନିଯୁକ୍ତ ହେଲେ ସେମାନଙ୍କ ନାମର ଦକ୍ଷିଣପାର୍ଶ୍ୱରେ ସେହି ସେହି ପଦମାନ ଲେଖା ହୋଇଅଛି । କାର୍ଯ୍ୟ ନିର୍ବାହକ ସମିତିକୁ ଆବଶ୍ୟକ ମତେ ଅନ୍ୟ ସଭ୍ୟ ନିଯୁକ୍ତ କରିପାରିବାର କ୍ଷମତା ମଧ୍ୟ ଦିଆଗଲା ଏବଂ ସମ୍ମିଳନୀ ମଣ୍ଡପ କେଉଁ ସ୍ଥାନରେ ନିର୍ମିତ ହେବ, ତହିଁର ଭାର କାର୍ଯ୍ୟ-ନିର୍ବାହକ ସମିତି ଉପରେ ନ୍ୟସ୍ତ ହେଲା ।

୧ । ମାନ୍ୟବର ଶ୍ରୀଯୁକ୍ତ ରାଜାସାହେବ । କ । କନିକା—ସଭାପତି
୨ । ମାନ୍ୟବର ମଧୁସୂଦନ ଦାସ—ସମ୍ପାଦକ
୩ । ଶ୍ରୀଯୁକ୍ତ ବିଚିତ୍ରାନନ୍ଦ ଦାସ
୪ । ,, ଲକ୍ଷ୍ମୀଧର ମହାନ୍ତି
୫ । ,, ପାରେଶ୍ୱର ମହାନ୍ତି
୬ । ,, ଭିଖାରିଚରଣ ପଟ୍ଟନାୟକ
(୩–୬) — ସହକାରୀ ସମ୍ପାଦକ
୭ । ରାୟ ସୁଦାମ ଚରଣ ନାୟକ ବାହାଦୁର— ସଭ୍ୟ
୮ । ମାନ୍ୟବର ବାବୁ ବ୍ରଜସୁନ୍ଦର ଦାସ ,,

Digitized by srujanika@gmail.com

୯ । ରେଭରେଣ୍ଡ ବ୍ରଜାନନ୍ଦ ଦାସ — ସଭ୍ୟ
୧୦ । ସୟଦ୍ ମୋକରମ ଅଲି ,,
୧୧ । ଶ୍ରୀଯୁକ୍ତ ରାମକୃଷ୍ଣ ପଟ୍ଟନାୟକ ,,
୧୨ । ,, ବନମାଳୀ ଚୌଧୁରୀ ,,
୧୩ । ,, ମଦନ ସାହୁ ,,
୧୪ । ,, ଜଗନ୍ନାଥ ମିଶ୍ର ,,
୧୫ । ,, ନବକୁମାର ଦାସ ,,
୧୬ । ,, କଳ୍ପତରୁ ଦାସ ,,

ଏହି କାର୍ଯ୍ୟ-ନିର୍ବାହକ ସମିତିର ଅନ୍ୟାନ୍ୟ ଅଧିବେଶନମାନଙ୍କରେ ନିମ୍ନଲିଖିତ ଆବଶ୍ୟକୀୟ ବିଷୟମାନ ସ୍ଥିର ହୋଇଥିଲା ।

୧ । ମାର୍ଚ୍ଚ ମାସ ତା ୩୦ ଓ ୩୧ ତାରିଖମାନ ସମ୍ମିଳନୀର ଦିବସ ଧାର୍ଯ୍ୟ କରାଗଲା ।

୨ । କଟକର ଉତ୍ତର ପଶ୍ଚିମ ପ୍ରାନ୍ତ ସ୍ଥିତ ଉଦଗା ପଡ଼ିଆରେ ମାନ୍ୟବର ମିଃ ମଧୁସୂଦନ ଦାସ—ସମ୍ପାଦକଙ୍କ ତତ୍ତ୍ୱାବଧାନରେ ସଭାମଣ୍ଡପ ନିର୍ମାଣ ହେବାର କଥା ହେଲା ।

୩ । କାର୍ଯ୍ୟ-ନିର୍ବାହକ ସମିତିର ସଭ୍ୟ ସଂଖ୍ୟା ବୃଦ୍ଧି କରାଗଲା ଏବଂ ଶ୍ରୀଯୁକ୍ତ ରେବତୀକାନ୍ତ ଘୋଷ Domiciled Bengalee Communityରୁ ସହକାରୀ ସମ୍ପାଦକ ନିଯୁକ୍ତ ହେଲେ ।

୪ । Domiciled Bengalee Association କୁ Utkal Union Conference ର ଅନ୍ତର୍ଭୁକ୍ତ କରାଗଲା ଏବଂ ସେ ସମ୍ବନ୍ଧେ ଅନ୍ୟାନ୍ୟ ଆବଶ୍ୟକୀୟ କାର୍ଯ୍ୟର ସାଧନ ନିମନ୍ତେ ସମ୍ପାଦକଙ୍କୁ କ୍ଷମତା ଦିଆ ଗଲା ।

## ପ୍ରଚାର ।

ସମ୍ମିଳନୀର ଉଦ୍ଦେଶ୍ୟ ପ୍ରଚାର କରିବା ନିମନ୍ତେ ମାନ୍ୟବର ମିଃ ମଧୁସୂଦନ ଦାସ ସିଃ ଆଇଃ ଇଃ କଟକର ଦୂରାଞ୍ଚଳକୁ ଯାଇ ଥିଲେ । ବାଲିକୁଦା, ଜଗତସିଂହପୁର ଓ ବରଡ଼ଙ୍ଗା ସ୍ଥାନମାନଙ୍କରେ ଗୋଟିଏ ଗୋଟିଏ ସଭା ହୋଇ ଥିଲା ଏବଂ ଉକ୍ତ ସଭାମାନଙ୍କରେ ଯଥାକ୍ରମେ ୩୦୦୦, ୫୦୦୦, ଓ ୨୦୦୦ ପର୍ଯ୍ୟନ୍ତ ଲୋକ ଉପସ୍ଥିତ ହୋଇ ଥିଲେ । ମଧୁବାବୁ ସରଳ ଭାଷାରେ ସେମାନଙ୍କୁ ମାତୃ-ପୂଜାର ଉଦ୍ଦେଶ୍ୟ ବୁଝାଇ ଥିଲେ ଏବଂ କଟକଠାରେ ମାତୃ-ପୂଜାରେ ଯୋଗ ଦେବା ପାଇଁ ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକେ ପ୍ରତିଶ୍ରୁତ ହୋଇ ଥିଲେ । ମଧୁବାବୁଙ୍କ ବକ୍ତୃତା ଦ୍ୱାରା ସେମାନଙ୍କ ମନରେ ସମ୍ମିଳନୀ ପ୍ରତି ଶ୍ରଦ୍ଧା ଓ ଭକ୍ତି ଜନ୍ମି ଥିବାର ପ୍ରତୀତ ହୁଏ । କାରଣ ଗତ ଅଧିବେଶନରେ ଉକ୍ତ ଅଞ୍ଚଳମାନଙ୍କରୁ ଅଧିକାଂଶ ବ୍ୟକ୍ତି ସମ୍ମିଳନୀରେ ଯୋଗ ଦେଇ ଥିଲେ ।

ଶ୍ରୀଯୁକ୍ତ ଅନନ୍ତ ମିଶ୍ର ମଧ୍ୟ କଟକର ବିଭିନ୍ନ ଅଞ୍ଚଳରେ ସମ୍ମିଳନୀର ଉଦ୍ଦେଶ୍ୟ ପ୍ରଚାର କରି ଥିଲେ ।

Digitized by srujanika@gmail.com

ଉଦ୍ଦୀପନାପୂରକ ସୂକ୍ତି*ମାନଙ୍କଦ୍ୱାରା ବିଭୂଷିତ ହୋଇଥିଲା ଏବଂ ସଭାବେଦୀର ସମ୍ମୁଖସ୍ଥ ଯାବନ୍ତର ଠିକ୍ ଟିରେପର ଓ ମଣ୍ଡପସ୍ଥଙ୍କର ଉପ୍ନଦେଶରେ ସମସ୍ତେ ଦେଖିପାରିବା ଭଳି ସ୍ଥାନରେ ବଡ଼ ବଡ଼ ଅକ୍ଷରରେ ଲେଖାଥିଲା—

## ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।

---

## ବିବରଣୀ ।

ଏହି ଅଧିବେଶନରେ ରାଜା, ଜମିଦାର, ମହାଜନ, ଧର୍ମାଧ୍ୟକ୍ଷ,* ଉକିଲ, ମୋକ୍ତାର, ଶିକ୍ଷକ, ଛାତ୍ର, ହାକିମ, ସରକାରୀ ଅମଲା, ସହର ଓ ମଫସଲର ସାଧାରଣ ଭଦ୍ରବ୍ୟକ୍ତି ସମେତ ପ୍ରାୟ ଛ ହଜାର ବ୍ୟକ୍ତି ଯୋଗଦାନ କରିଥିଲେ । ଏ ବର୍ଷର ବିଶେଷତ୍ୱ ଏହି ଯେ କେତେକ ଅବଗୁଣ୍ଠନବତୀ ମହିଳା ଓ ଅସ୍ପୃଶ୍ୟ ଶ୍ରେଣୀସ୍ଥ ଲୋକମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି ସ୍ୱତଃପ୍ରବୃତ୍ତ ହୋଇ ସମ୍ମିଳନୀରେ ଯୋଗଦାନ କରିଥିଲେ । ଏ ବର୍ଷ ସମ୍ମିଳନୀରେ ଆଉରି ଗୋଟିଏ ପ୍ରଧାନ ବିଶେଷତ୍ୱ ଏହି ଯେ ମଫସଲରୁ ସାଧାରଣ ଲୋକେ ସମ୍ମିଳନୀରେ ଯୋଗଦାନ କରି ସମ୍ମିଳନୀର ଉଦ୍ଦେଶ୍ୟ ହୃଦୟଙ୍ଗମ କରିଥିବାର ସ୍ପଷ୍ଟ ଜଣାଯାଏ । ତାହାପାଇଁ ନିମନ୍ତେ ଯେ କେତୋଟି ଟଙ୍କା ସମ୍ମିଳନୀ ମଣ୍ଡପରେ ଆଦାୟ ହେଲା ସେଥିରେ ପଲ୍ଲିବାସୀମାନଙ୍କ ମଧ୍ୟରୁ ଅନେକ ଦାତା ଯଥାଶକ୍ତି ଚାନ୍ଦାଦେବା ତହିଁର ନିଦର୍ଶନ । ପଲ୍ଲି ସାଧାରଣରୁ ପ୍ରାୟ ସହସ୍ରାଧିକ ବ୍ୟକ୍ତି ଯୋଗ ଦେବା ଅତ୍ୟନ୍ତ ଆନନ୍ଦର ବିଷୟ ।

---

## କାର୍ଯ୍ୟାବଳୀ ।

### ପ୍ରଥମ ଦିବସ ।

ମାର୍ଚ୍ଚ ତା ୩୦ ରିଖ । ସକାଳ ଘ ୭ଘଣ୍ଟା—ଘ ୧୧ ଘଣ୍ଟା ।

( କାର୍ଯ୍ୟ ନିର୍ଘଣ୍ଟ )

୧—ଭାରତ ଗୀତିକା ।
୨—ମାଅଙ୍କର ଆବାହନ ( ପୂଜା )
୩—ସଙ୍ଗୀତ ।
୪—ଅଭ୍ୟର୍ଥନା ସଭାର ସଭାପତିଙ୍କ ଅଭିଭାଷଣ ।
୫—ସଭାପତି ନିର୍ବାଚନ ।

ପ୍ର—ମାନ୍ୟବର ବାବୁ ବ୍ରଜସୁନ୍ଦର ଦାସ
ଅ—ମହନ୍ତ ଗଦାଧର ରାମାନୁଜ ଦାସ
ଶ୍ରୀଯୁକ୍ତ ଜଗବନ୍ଧୁ ଘୋଷ
ମି: ଅବଦୁଲ ମଜାନ—ବାରିଷ୍ଟର
ସ—ଶ୍ରୀଯୁକ୍ତ ଯୁବରାଜ ସାହେବ—ଟେକ୍କାଲି
ଶ୍ରୀଯୁକ୍ତ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

---

*ଉକ୍ତ ସୂକ୍ତି ଗୁଡ଼ିକ ଏହି ପୁସ୍ତକର କେତେକ ପୃଷ୍ଠାର ଶିରୋଦେଶରେ ଦ୍ରଷ୍ଟବ୍ୟ ।

Digitized by srujanika@gmail.com

୬—ବାଲେଶ୍ୱର ପ୍ରତିନିଧିଙ୍କ ଦ୍ୱାରା ଗତବର୍ଷର ବିବରଣୀ ପାଠ ।
୭—ଅନୁପସ୍ଥିତ ଭଦ୍ରବ୍ୟକ୍ତି ମାନଙ୍କର ସହାନୁଭୂତି ସୂଚକ ପତ୍ରମାନ ପାଠ ।
୮—ସଭାପତିଙ୍କ ଅଭିଭାଷଣ ।
୯—ସଙ୍ଗୀତ ।
୧୦—ନିର୍ଦ୍ଧାରଣ ମାନ ।
୧୧—ବିଷୟ ନିର୍ବାଚନ କମିଟୀ ଗଠନ ।
୧୨—ସଙ୍ଗୀତ ।



ଉଲ୍ଲିଖିତ ପ୍ରତ୍ୟେକ କାର୍ଯ୍ୟର ବିବରଣୀମାନ ନିମ୍ନରେ ବିଶଦଭାବରେ ବର୍ଣ୍ଣିତ ହୋଇଅଛି ।

୧ । ଅଭ୍ୟର୍ଥନା ସଭାର ସଭାପତି କନିକାର ରାଜା ମାନ୍ୟବର ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଆଦେଶକ୍ରମେ ନିମ୍ନଲିଖିତ ୰ଭାରତଗୀତିକା ହାର୍ମୋନିୟମ୍ ଯନ୍ତ୍ରସାହାଯ୍ୟରେ ଗୀତ ହୋଇଥିଲା ଏବଂ ସଭାସ୍ଥ ସମସ୍ତ ସଭ୍ୟବୃନ୍ଦ ଦଣ୍ଡାୟମାନ ହୋଇ ନିବିଷ୍ଟଚିତ୍ତରେ ଜନନୀ ଜନ୍ମଭୂମିର ସ୍ତବ ଶ୍ରବଣ କଲେ ।

( ଭୈରବୀ ରାଗ । କାୱାଲି ତାଳାଭ୍ୟାଂ ଗୀୟତେ )

ସର୍ବେଷାଂ ନୋ ଜନନୀ ଭାରତ
ଧରଣୀ କଳ୍ପ ଲତେୟଂ ,
ଜନନୀବତ୍ସଳତନୟଗଣୈସ୍ତତ୍
ସମ୍ୟକ୍ ଶର୍ମ ବିଧେୟଂ । ଧ୍ରୁବଂ ।
ହିମଗିରି-ଶୀମନ୍ତିତ-ମସ୍ତକମିଦ—
ମମ୍ବୁଧି ପରିଗତ ପାର୍ଶ୍ୱମ୍ ;
ଅସ୍ପୃଷ୍ଟାନନ୍ଦ-ମନ୍ଦମନୀଷଂ
ଶ୍ରୌତପୁରାତନ ମାର୍ଗମ୍ ।
ବିଜନିତ ହର୍ଷଂ ଭାରତବର୍ଷଂ
ବର୍ଷୋତ୍କର୍ଷ ନିଦାନଂ ;
ଭାରତଶର୍ମଣି ଭୂତ ମସ୍ମାଭି—
ର୍ନବ ମିଦମୈକ୍ୟ ବିଧାନମ୍ ।
ଉତ୍କଳଗୌଡ଼ାନ୍ଧ୍ରୀୟାଃ ଫସଦ
ଯେ ବନ୍ଧୁମଣ୍ଡ ସମେତାଃ,
ଏତେ, ଗୃପର ଜନପଦଜାଃ ନନୁ
ଭାରତ-ହିତ-ନିକେତାଃ ।
ଭାରତହିତସମ୍ପାଦନମେବନ୍ତୁ
କାର୍ଯ୍ୟମିଷ୍ଟ ମନ୍ତ୍ରପାକମ୍ ;
ଭାରତବର୍ଜ୍ଜଂ କମପି ନ କାର୍ଯ୍ୟଂ
ନିଶ୍ଚିତମିତ୍ୟସ୍ମାକଂ ।

Digitized by srujanika@gmail.com

ଅରଥପଙ୍କଜଦଳନିଭମୂର୍ତ୍ତିନ—
　　　　　　　ମଣ୍ଡଳ ମେଘ ବିଦ୍ଧତଂ ଯଦ୍ଭୁ,
ତଦ୍ୟକୃତେ ବନ୍ଧୁମଣ୍ଡ ସମେତାଃ
　　　　　　　ବହୁତାଡ଼ୋହ୍ଲନ-ଯସ୍ତୁ ।
ଭାରତମେକାଗତରମ୍ୟାଙ୍କଂ
　　　　　　　ନାପରାସ୍ତି ଭୂବନାମ
ସର୍ବାଦେବୀ ଦରଷନ୍ତୁ କର୍ମ୍ମଣି ତତ୍ର
　　　　　　　ଭାରତ ମେବ ନମାମଃ ।

---

୨ । ଲିଖିତ ସଂସ୍କୃତ ଶ୍ଳୋକ ପଢ଼ିସାରିବା ପରେ ମାନ୍ୟବର ଡ଼ିଃ ମଧୁସୂଦନଦାସ ମହୋଦୟ ମା'ଙ୍କର ( ଉତ୍କଳ ମାତାଙ୍କର ) ଆବାହନ କରିବାପାଇଁ ଅଗ୍ରସର ହେଲେ । ବକ୍ତୃତାମଞ୍ଚଉପରେ ଦଣ୍ଡାୟମାନ ହୋଇ ମଧୁବାବୁ ମା'ଙ୍କୁ ଯେଉଁ ବାଣୀରେ ଆବାହନ କରିଥିଲେ ତାହା ତଳେ ଦିଆଗଲା——

ସଭାପତି ମହାଶୟ, ଭାଇ ଓ ଭଉଣୀମାନେ !

ମୋତେ ସଭାପତି ମହାଶୟ ମା'ଙ୍କ ଆବାହନର କାର୍ଯ୍ୟ ଦେଇ ଅଛନ୍ତି; ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟାନ୍ୟ ସ୍ଥାନ ମାନଙ୍କରେ ଯେପରି Conference ( ସମ୍ମିଳନୀ ) ହୁଏ—ସେଠାରେ ମାତୃପୂଜା ହୁଏ ନାହିଁ—ସେ ସବୁ, ଭାଇମାନେ, ଏକତ୍ର ମିଳିତ ହୋଇ ପରସ୍ପର ମନର ଭାବ ପ୍ରକାଶ କରିବାକୁ । ଏ ଉତ୍କଳବାସୀଙ୍କ Conference (ସମ୍ମିଳନୀ)—ଜନନୀ ଜନ୍ମଭୂମିଙ୍କ ପୂଜାମଣ୍ଡପ । ପୂଜା କାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ଆବାହନ ବ୍ୟତିରେକେ ପୂଜା ଆରମ୍ଭ ହୋଇ ନ ପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇ ଭଉଣୀ ଉପସ୍ଥିତ, ସମସ୍ତଙ୍କ ହୃଦୟରେ ଜନନୀ ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନ କରିବା ଉଚିତ । ଭାଇମାନେ, ସମସ୍ତେ ଥରେ ତାଙ୍କ ପୁଣ୍ୟ ପିତୁଳା ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟ ପାଇଁ ମୁଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି, ମାତାଙ୍କ ନାମରେ ଆଜ୍ଞା ଦେଉଅଛି ( କରତାଳି ) । ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କୋଡ଼ରେ ବସିଅଛୁଁ । ଯଦି କେହି ପଚାରନ୍ତି ଯେ ମାତାଙ୍କ କୋଡ଼ରେ ବସିଥିବାର କିପରି ଅନୁଭବ କରାଯାଇ ପାରେ; ତାଙ୍କର ପିତୁଳା ହୃଦୟରେ କିପରି ସ୍ଥାପନ କରାଯାଇ ପାରେ ତେବେ କେବଳ ଏହି ଉପରେ ଲେଖା ହୋଇଥିବା "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି । ଏ ବାକ୍ୟଟି ବହୁକାଳରୁ ଶୁଣାଅଛି କିନ୍ତୁ ତାହାର ଅର୍ଥ ବୁଝିବାକୁ ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ ପ୍ରଥମେ 'ଜନନୀ', ୨ୟରେ 'ଜନ୍ମଭୂମି'; ତୃତୀୟରେ 'ସ୍ୱର୍ଗ' । ମନୁଷ୍ୟ ଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ମନେକଲେ ଦେଖିବେ; ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି, ଶେଷରେ ସ୍ୱର୍ଗ ; ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ

Digitized by srujanika@gmail.com

ଜୀବନରେ ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର ମୁକ୍ତି ବା ସ୍ୱର୍ଗ । ( କର ତାଳ) ଏଥି ପାଇଁ ଜନନୀ, ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି, ତାହା ଈଶ୍ୱରଙ୍କ ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟ କରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟ କରୁଛି ? କିପରି ସ୍ୱର୍ଗଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟ କରେ । ଏ ପୃଥିବୀରେହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର କରି ସ୍ୱର୍ଗପ୍ରାପ୍ତ ହୁଏ । ମନେ କରନ୍ତୁ, ଆଜି ପୃଥିବୀ ସମୁଦ୍ରରେ ମିଶିଯିବ, ତେବେ କେଉଁଠାରେ ଠିଆ ହୋଇ ମୁକ୍ତିମାର୍ଗ—ସ୍ୱର୍ଗଲାଭର ଉପାୟ ଖୋଜିବା । ଅତଏବ କହେ "ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" ।

ଆମ୍ଭେମାନେ ସମସ୍ତେ ଯେବେ ମାତୃଗର୍ଭରେ ଥିଲୁଁ, ସେତେବେଳେ ଆମ୍ଭମାନଙ୍କର ଜ୍ଞାନ ନ ଥିଲା, ଜ୍ଞାନ ଚକ୍ଷୁ ନ ଥିଲା ; ସେତେବେଳେ ଆମ୍ଭମାନଙ୍କର ଏପରି ଏକ ଅବସ୍ଥା ଥିଲା ଯେ ସଂସାର ସଙ୍ଗେ ଆମ୍ଭମାନଙ୍କର ସମ୍ପର୍କ କିଛି ଜାଣୁ ନ ଥିଲୁଁ । ଯେଉଁ ବାୟୁ ଆମ୍ଭମାନଙ୍କ ଜୀବନ ରକ୍ଷା କରୁଅଛି ତାହାର ପରିଚୟ ପାଇ ନ ଥିଲୁଁ, ଯେଉଁ ଚକ୍ଷୁରେ ସମସ୍ତ ବସ୍ତୁ ଦେଖୁଥାଉଁ, ଯେଉଁ କର୍ଣ୍ଣରେ ସମସ୍ତ ଶୁଣୁଥାଉଁ ଏ ସବୁ ସେତେ ଉପକାର କରି ନ ଥିଲେ । ସେ ଜୀବନ ମାତୃଗର୍ଭରେ ଥିଲା । ପରେ ପୁଣି ମନୁଷ୍ୟର ଅନ୍ତିମ ଅବସ୍ଥା ଭାବନା କର । କେହି ପ୍ରିୟଜନର ମୃତ୍ୟୁକାଳରେ ଉପସ୍ଥିତ ଥିଲେ ଦେଖିଥିବ, କ'ଣ ହେଲା--ସେତେବେଳେ ଆଦ୍ୟ ଅବସ୍ଥାରେ ଯେପରି ସେପରି—କାନକୁ ଶୁଭିଲା ନାହିଁ, ଚକ୍ଷୁକୁ ଦିଶିଲା ନାହିଁ, ଭିତରେ ଯେଉଁ ଈଶ୍ୱର ଅଂଶ ଅଛି, ସେହି ଅବସ୍ଥା ଉପସ୍ଥିତ ହେଲା ; ସେହି ଅବସ୍ଥା ମାତୃଗର୍ଭର ଅବସ୍ଥା ସହି ସମାନ । ଯେଉଁ ଅବସ୍ଥାରେ ପ୍ରତ୍ୟେକେ ଅନ୍ୟର ମୃତ୍ୟୁ ଦେଖି ଅଛନ୍ତି, ସେହି ଅବସ୍ଥା ଯେବେ ସମସ୍ତଙ୍କର ହେବ । ଭାବ ଦେଖି, ଯେତେବେଳେ କାନ ଶୁଣୁ ନାହିଁ, ଆଖି ଦେଖୁ ନାହିଁ—କେବଳ ମାତ୍ର ଆତ୍ମା ଜାଗ୍ରତ ରହିଅଛି—ସେ ଅବସ୍ଥା କିପରି ? ମୃତ୍ୟୁ ଉତ୍ତାରୁ ଏ ମାଟିର ଦେହ ମାଟିରେ ମିଶିଯିବ । ପ୍ରାଣବାୟୁ ବାହାରି ଯିବା ପୂର୍ବରୁ ତାହା ମଧ୍ୟ ମାଟି ତୁଲ୍ୟ । ପ୍ରିୟଜନମାନେ ଏ ମୃତ ପିଣ୍ଡକୁ ମାଟିରେ ପକାଇ ଦେବେ । ଯେତେବେଳ ଯାଏ ମୃତବ୍ୟକ୍ତିର ମଧ୍ୟରେ ଜୀବନ ଥାଏ, ସେତେବେଳ ଯାଏ ମଧ୍ୟ ତାହାର ଦେହ ମୃତ୍ତିକା ସହିତ ସମାନ । ମୃତ୍ତିକା ଠାରୁ ତାହାର ତଫାତ୍ କଣ ? ସେତେବେଳର ଦେହ, ଏତେ ଯତ୍ନରେ ଲାଳନ ପାଳନର ଏ ଶରୀର ଆଉ ମାଟିର ପ୍ରଭେଦ କଣ ? ସେତେବେଳେ କେବଳ ଈଶ୍ୱରଙ୍କ ଅଂଶ ସେହି ଆତ୍ମା ଶରୀର ମଧ୍ୟରେ ଥାଏ । ବାହ୍ୟରେ ତାହାର କୌଣସି ଚିହ୍ନ ନାହିଁ । ଆଉ ଗୃହ ପାଞ୍ଚଘଣ୍ଟାପରେ ଏ ଦେହ ମାଟିରେ ମିଶିଯିବ । ସେ ସମୟରେ ଦେହ, ମାଟି ସମାନ । ଅର୍ଥାତ୍ ଆତ୍ମା ସେ ଶରୀର ମଧ୍ୟରେ ବା ମାଟିରେ ବସିଛି । ଅର୍ଥାତ୍ ସେହି ମାତୃଭୂମିର କୋଳରେ ପିଣ୍ଡ ଥାଉ ଆଉ ଆତ୍ମା ବାହାରି ଯିବ । ଯେବେ ଆମ୍ଭମାନଙ୍କର ସମସ୍ତଙ୍କର ଏହି ଅବସ୍ଥା ହେବ । ସେତେବେଳେ ବୁଝିପାରିବ ଭୂମେ ମାତୃକୋଳରେ ବସିଅଛ

Digitized by srujanika@gmail.com

ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବାପାଇଁ ମୋ ଜନ୍ମଭୂମି ମୋତେ ଖାଦ୍ୟାଦି ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଆମ୍ଭେମାନେ ପ୍ରଥମେ ପ୍ରସବ ହେଲାବେଳେ ଭୂମିଷ୍ଠ ହେଲୁ ବୋଲି କହନ୍ତି ଅର୍ଥାତ୍ ଆମ୍ଭମାନଙ୍କୁ ମାତା ଜନ୍ମଭୂମି କୋଡ଼ରେ ଅର୍ପଣ କରି ସେହି ଜନ୍ମଭୂମିର ପୂଜା କରିବାକୁ ଆଦେଶ ଦିଅନ୍ତି । ଏହି କଥା ଥରେ ଅନ୍ତଃକରଣରେ ଭାବ, ଶେଷ ଅବସ୍ଥା ସ୍ମରଣ କର । ମାତା ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷ ହେଲାଣି । କେବଳ ଯେ ଶରୀର ଅଛି, ତାହା ମାତୃଭୂମିର ମାଟି ସମାନ । ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି, ମା ଉତ୍କଳ କୋଡ଼ରେ ଚକ୍ଷୁ ବୁଜି ଥରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମିର ପିତୁଳା ଆପେ ଜାଗ୍ରତ ହେବ । (କରତାଳି) 'ଚକ୍ଷୁ ବନ୍ଦକର, ଦେଖିବ, ତୁମ୍ଭ ଭିତରେ ମା' ଅଛନ୍ତି । ଏହି ତ ମାତୃଭୂମିର ପୂଜା । ଭାଇମାନେ, ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆହ୍ୱାନ କର । ସମସ୍ତେ କହ "ବନ୍ଦଇ ଜନ୍ମଭୂମି" ।

ଏହି ଜାତୀୟ ଧ୍ୱନି ସଭାସ୍ଥ ସମସ୍ତ ସଭ୍ୟବୃନ୍ଦ ଏକସ୍ୱରରେ ତିନିଥର ଉଚ୍ଚାରଣ କଲେ ଏବଂ ତଦ୍ଦ୍ୱାରା ପ୍ରକୃତରେ ଉତ୍କଳମାତାଙ୍କର ଆବାହନର ସୂଚନା ବୋଲି ଅନୁଭୂତ ହୋଇଥିଲା ।

---

### ୩ । ଯନ୍ତ୍ରସାହାଯ୍ୟରେ ନିମ୍ନଲିଖିତ ଶ୍ଳୋକଟି ବୋଲାଯାଇଥିଲା ।

'ମାଅ' 'ମାଅ' ବୋଲି କେତେ ମୁଁ ଖୋଜିଲି
ମାଅକୁ ପାଇଲି ନାହିଁ ।
'ଭାଇ' 'ଭାଇ' ବୋଲି କେତେ ମୁଁ ଡାକିଲି
ନ ଦେଲେ ଉତ୍ତର କେହି । ୧ ।

ଖୋଜିଲି ଅରଣ୍ୟେ ଜନ ସମାଜରେ
ଖୋଜିଲି ବାରିଧିତଟ ।
ସର୍ବତ୍ର ଦେଖିଲି ମାତା ପଦ ଚିହ୍ନ
ନ ହେଲା ମାତାର ଭେଟ । ୨ ।

ଭୁବନେଶ୍ୱରରେ ପଦଚିହ୍ନ ପରେ
ଲେଖାଅଛି 'ରାଜରାଣୀ' ।
ନୀଳାଚଳ ଧାମେ ପୂଜା ହେଉଅଛି
ହୃଦମ୍ଭୂଜାତ ମଥାମଣି । ୩ ।

ଶୁଣିଅଛି ଶାସ୍ତ୍ରେ ସତୀ ଅପମାନେ
ଧରା ହୁଏ ବିଦାରଣ ।
ଅପମାନ ହେତୁ ସୀତା ଦେବୀଙ୍କର
ମହୀହୃଦେ ବାସସ୍ଥାନ । ୪ ।

ଅପମାନ ହେତୁ ଜନନୀ ମୋହର
ଉତ୍କଳ ଭୂମଧ୍ୟବାସୀ ।

Digitized by srujanika@gmail.com

ଉତ୍କଳର ମାଟି ପବିତ୍ର ହୋଇଛି
ସ୍ୱର୍ଗାଦପି ଗରୀୟସୀ । ୫ ।
ଜନନୀର ଦେଖା କରିବାର ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ପବିତ୍ର ହୋଇଛି
ତା ଧୂଳି ଲେପ ବଦନେ । ୬ ।
ବୀରପ୍ରସବିନୀ କୋଟି ସୁତ ମାତା
ପାଇବ କି ଦରଶନ ?
ମୋ ଭଳି ନିର୍ଗୁଣ ଧନ-ମାନ-ହୀନ
ସନ୍ତାନ କଲେ ରୋଦନ । ୭ ।
କୋଟିଏ ସନ୍ତାନ 'ଗୋଟିଏ ସ୍ୱରରେ
'ଜନନି' ! 'ଜନନି' ! ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ । ୮ ।
ଧନ, ମାନ, ଜନ ଯାହା ଉପାର୍ଜ୍ଜନ
କରିଅଛ ଧରାତଳେ,
ହରଷିତ ମନେ କରତବ୍ୟ ଜ୍ଞାନେ
ଅର୍ପିଦିଅ ଯଜ୍ଞସ୍ଥଳେ । ୯ ।
ଜାତି ପ୍ରେମବହ୍ନି ପ୍ରଜ୍ୱଳିତ କରି
ସ୍ୱାର୍ଥକୁ ଦିଅ ଆହୁତି ।
'ସ୍ୱାର୍ଥମେଧ ଯଜ୍ଞ' ହୁରି ଅଟେ ନୀତି
ଘୃତକୁ ମିଶାଇ ଘୃତି । ୧୦ ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା ।
ସେହି ତୋର ମାତା, ସେହି ତୋର ଦାତା
କର ସେହି ପଦ ପୂଜା । ୧୧ ।

---

୪ । ଏହି ସଙ୍ଗୀତ ପରେ ଅଭ୍ୟର୍ଥନା ସଭାର ସଭାପତି ମାନ୍ୟବର ଶ୍ରୀଯୁକ୍ତ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେଓ ତାଙ୍କର ଅଭିଭାଷଣ ପାଠ କଲେ । ତାହା ନିମ୍ନରେ ଦିଆଗଲା ।

ଭାଇମାନେ,

ସମ୍ମିଳନୀର ଅଭ୍ୟର୍ଥନା ସମିତି ପକ୍ଷରୁ ଆପଣମାନଙ୍କୁ ଅଭ୍ୟର୍ଥନା କରିବା-ପାଇଁ ମୁଁ ଆଜି ଆପଣମାନଙ୍କ ସମ୍ମୁଖରେ ଛିଡା ହୋଇଅଛି । ଆପଣମାନେ ଯେତେ ବାଧା ବିଘ୍ନ ଲଙ୍ଘନ ଓ କଷ୍ଟସ୍ୱୀକାର କରି ଆଜି ମାତୃପୂଜାରେ ଯୋଗ ଦେବା କାରଣ ଏଠାକୁ ଆସିଅଛନ୍ତି ତହିଁର ଉପଯୁକ୍ତ ଅଭ୍ୟର୍ଥନା କରିବାପାଇଁ ମୁଁ ଅକ୍ଷମ ।

Digitized by srujanika@gmail.com

ମୁଁ ଦେଖୁଅଛି ଆପଣମାନଙ୍କ ମଧ୍ୟରୁ କେହି କେହି ସୁଦୂର ଗଞ୍ଜାମ, ଭିଜାଗାପଟମ, ସିଂହଭୂମ ଏବଂ ଅନ୍ୟାନ୍ୟ ଦୂରବର୍ତ୍ତୀ ସ୍ଥାନମାନଙ୍କରୁ ସ୍ୱଚ୍ଛ ଓ ଭକ୍ତିର ସହିତ ମାତୃପୂଜା କରିବା ଉଦ୍ଦେଶ୍ୟରେ ଏଠାରେ ଉପସ୍ଥିତ ହୋଇଅଛନ୍ତି । ଆଜି ବଡ଼ ସୁଖର ଦିନ ଯେ ମାତୃପୂଜା ଉଦ୍ଦେଶ୍ୟରେ ନାନାସ୍ଥାନରୁ ଆପଣମାନେ ସମସ୍ତ କଷ୍ଟକୁ ତୁଚ୍ଛ କରି ଏଠାରେ ସମ୍ମିଳିତ ହୋଇଅଛନ୍ତି । ଆପଣମାନେ ଆମ୍ଭମାନଙ୍କ ଅନୁରୋଧକ୍ରମେ ନାନାପ୍ରକାର କଷ୍ଟ ସ୍ୱୀକାର କରି ଆଜି ଏଠାରେ ଉପସ୍ଥିତ ହୋଇଥିବାରୁ ଆପଣମାନଙ୍କୁ ଆନ୍ତରିକ ଧନ୍ୟବାଦ ଦେଉଅଛୁଁ ଓ ପ୍ରାର୍ଥନା କରୁଅଛୁଁ କି ଆପଣମାନେ ଆମ୍ଭମାନଙ୍କର ସମସ୍ତପ୍ରକାର ତ୍ରୁଟି ମାର୍ଜ୍ଜନା କରିବା ହେବେ ।

## ମାତୃପୂଜା ।

ମୁଁ ବର୍ତ୍ତମାନ କହିଲି ଯେ ଆମ୍ଭେମାନେ ଏଠାରେ ମାତୃପୂଜାପାଇଁ ଉପସ୍ଥିତ ହୋଇଅଛୁଁ । ଏଥିର ଏପରି ଅର୍ଥ ନୁହେଁ ଯେ ଆମ୍ଭେମାନେ ବର୍ଷମଧ୍ୟରେ ଏକଥର ମାତ୍ର ଦୁଇ ଏକଦିନ ପାଇଁ ଏକତ୍ର ହୋଇ ଉତ୍କଳ ମାତାଙ୍କର ପୂଜା କରିବା ଓ ତହିଁପରେ ଯେ ଯାହାର ଘରକୁ ଫେରିଯାଇ ଏକ ବର୍ଷ ପର୍ଯ୍ୟନ୍ତ ଆଉ ସେ ଚିନ୍ତା କରିବା ନାହିଁ । ମାତୃପୂଜା ସମ୍ବନ୍ଧେ ମୋହର ଅଭିପ୍ରାୟ ଏହି ଯେ ଆମ୍ଭେମାନେ ଉତ୍କଳ ମାତାଙ୍କର ଉନ୍ନତି ସାଧନପାଇଁ ସର୍ବଦା ଚିନ୍ତା କରିବା ଓ ତହିଁର ଉପାୟ ଅବଲମ୍ବନ କରିବା । ଏହିପରି ପ୍ରତିଦିନ ଆମ୍ଭେମାନେ ଯାହା କରିବା ବର୍ଷ ଶେଷରେ ଏକଥର ଏକତ୍ର ହୋଇ ତହିଁର ଆଲୋଚନା କରିବା । ଏହା ପ୍ରକୃତ ମାତୃପୂଜା । ଏକ ସମୟରେ ଉତ୍କଳ ଦେଶ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଓଡ଼ିଆମାନଙ୍କୁ ଆଫଗାନ, ମୋଗଲ ପ୍ରଭୃତି ଜାତିମାନେ ଦମନ କରି ପାରି ନ ଥିଲେ । ଶିଳ୍ପ ଓ ବାଣିଜ୍ୟ ଦ୍ୱାରା ଓଡ଼ିଆମାନେ ଏକ ସମୟରେ ପୃଥିବୀର ଗୋଟିଏ ଉନ୍ନତ ଜାତି ବୋଲି ପରିଗଣିତ ହେଉଥିଲେ । ବର୍ତ୍ତମାନ ଉତ୍କଳର ସେହି ଅବସ୍ଥା ଅଛି କି ? ନ ଥିଲେ କେଉଁ କାରଣରୁ ନାହିଁ ? ଉତ୍କଳ ମାତାଙ୍କର ବର୍ତ୍ତମାନ ମୁମୂର୍ଷୁ ଅବସ୍ଥା ପାଇଁ ଆମ୍ଭେମାନେ ଦାୟୀ କି ଅନ୍ୟ କେହି ଦାୟୀ ? ଏହି ସମସ୍ତ ବିଷୟର ଆଲୋଚନା କରି ଉତ୍କଳମାତା ପୂର୍ବ ଗୌରବ କିପରି ପ୍ରାପ୍ତ ହେବେ ତହିଁର ଉପାୟ ଅବଲମ୍ବନ କରିବା ଆମ୍ଭମାନଙ୍କର ଏକାନ୍ତ କର୍ତ୍ତବ୍ୟ । ଉତ୍କଳ ଦେଶର ବର୍ତ୍ତମାନ ଅବସ୍ଥା ନଦୀ ବଢ଼ି ପରେ ଦେଶର ଅବସ୍ଥା ସଙ୍ଗେ ତୁଳନା କରାଯାଇପାରେ । ନଦୀ ବଢ଼ି ଦ୍ୱାରା ଯେପରି କୂଳ ଉଚ୍ଛୁଳିପଡ଼େ ବଢ଼ି ଛାଡ଼ିଗଲେ ପାଣି ବାହାରିଯାଇ କେବଳ ଖାଲ ଯାଗାମାନଙ୍କରେ ପାଣି ରହିଯାଏ, ଏହି ପାଣି ପୁନର୍ବାର ନଦୀଜଳ ସଙ୍ଗେ ମିଶିବା ପାଇଁ ବଢ଼ିର ଆବଶ୍ୟକ ହୁଏ, ସେହିପରି ଉତ୍କଳ ମାତାଙ୍କ ପ୍ରତି ତାହାଙ୍କ ସନ୍ତାନମାନଙ୍କର ଗଭୀର ଭକ୍ତି ନିର୍ଝରରୁ ଯେଉଁ ପ୍ରବଳ ସ୍ରୋତ ବହିବ ତାହା ବଢ଼ି ଜଳ ପ୍ରାୟ ଉତ୍କଳର ଭିନ୍ନ ଭିନ୍ନ ଖଣ୍ଡମାନ ଏକତ୍ର କରିଦେବ । ସମସ୍ତ ଭାଇମାନଙ୍କର ବର୍ଷମଧ୍ୟରେ ଏକଥର ମିଳିତ ହୋଇ ଏହି ସମସ୍ତ ବିଷୟ ଆଲୋଚନା

Digitized by srujanika@gmail.com

କରିବାପାଇଁ କେତେକ ବର୍ଷ ହେଲା ଏହି ସମ୍ମିଳନୀର ଉତ୍ପତ୍ତି ହୋଇଅଛି । ମାତୃପୂଜା ଦ୍ୱାରା ଆମ୍ଭେମାନେ ମାତାଙ୍କର ଉନ୍ନତି ସାଧନ କରିବା । ଉତ୍କଳ ମାତାଙ୍କର ଉନ୍ନତିରେ ଆମ୍ଭମାନଙ୍କର ଉନ୍ନତି; ତାହାଙ୍କର ଅବନତିରେ ଆମ୍ଭମାନଙ୍କର ଅବନତି । ଏହି ବିଷୟ ସର୍ବଦା ମନେ ରଖିବା ଉଚିତ । ଉତ୍କଳର ପ୍ରକୃତ ଉନ୍ନତି ସାଧନ କରିବାକୁ ଗଲେ ପ୍ରଥମେ ନିଜର ଉନ୍ନତିସାଧନ ଆବଶ୍ୟକ । ନିଜର ଉନ୍ନତି ଦ୍ୱାରା ଏକା ମୋହର ଅଥବା ଜଣକର ଉନ୍ନତିସାଧନ ମୋହର ଅଭିପ୍ରାୟ ନୁହେ । ଉତ୍କଳମାତାଙ୍କର ଉନ୍ନତି ସାଧନ ପାଇଁ ସମସ୍ତ ଉତ୍କଳବାସିଙ୍କର ଉନ୍ନତି ଆବଶ୍ୟକ । ପ୍ରତ୍ୟେକର ଉନ୍ନତି ନ ହେଲେ ଗୋଟିଏ ଜାତିର ବା ଦେଶର ଉନ୍ନତି ହୋଇ ନ ପାରେ । ଯେପରି ଶରୀରର ସମସ୍ତ ଅଙ୍ଗ ସମାନ ଭାବରେ ପରିପୁଷ୍ଟ ନ ହେଲେ ଶୋଭା ପାଏ ନାହିଁ ବା ସୁସ୍ଥ ଶରୀର ବୋଲି କୁହାଯାଏ ନାହିଁ, ସେହିପରି ଉତ୍କଳମାତାଙ୍କର ସମସ୍ତ ସନ୍ତାନ ଉନ୍ନତ ନ ହେଲେ ତାହାଙ୍କର ପ୍ରକୃତ ଉନ୍ନତି ହୋଇ ନ ପାରେ ।

## ଅଧିବେଶନର ସମୟ ପରିବର୍ତ୍ତନ ।

ଇତିପୂର୍ବେ ସମ୍ମିଳନୀର ଅଧିବେଶନ ପୌଷ ମାସରେ ଅର୍ଥାତ୍ ବଡ଼ଦିନ ଛୁଟି ସମୟରେ ହେଉଥିଲା । କିନ୍ତୁ ଗତ ବଡ଼ଦିନ ଛୁଟି ସମୟରେ କଲିକତାରେ କଂଗ୍ରେସ ପ୍ରଭୃତି କେତେକ ଜାତୀୟ ସମ୍ମିଳନୀ ହେଉଥିବାରୁ ତହିଁରେ ଯୋଗ ଦେବା ପକ୍ଷେ ଅସୁବିଧା ଘଟିବା ବିବେଚନାରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ଏହି ବର୍ଷ ଇଷ୍ଟର ଛୁଟି ମଧ୍ୟରେ ହେବାର ସ୍ଥିର କରାଯାଇ ଥିଲା । ଏବର୍ଷ ଇଷ୍ଟର ସଙ୍ଗେ ଉତ୍କଳର ଏକ ପ୍ରଧାନ ପର୍ବ ଦୋଳଯାତ୍ରା ପଡ଼ିବାରୁ ଅନେକ ଭାଇମାନେ ଉପସ୍ଥିତ ହୋଇ ନ ପାରିବାର ଆଶଙ୍କା କରାଯାଉଥିଲା । କିନ୍ତୁ ଅତ୍ୟନ୍ତ ସୁଖର ବିଷୟ ଏହି ଯେ ଆଜି ଅନେକ ଭାଇମାନେ ଏଠାରେ ଉପସ୍ଥିତ ହୋଇଅଛନ୍ତି । ଏଥିରୁ ପ୍ରମାଣିତ ହେଉଅଛି ଯେ ଦୋଳପର୍ବ ମାତୃପୂଜାରେ ବାଧାଦେଇ ପାରି ନାହିଁ ଓ ଭାଇମାନେ ଆପଣା ଆପଣା କର୍ତ୍ତବ୍ୟ ଉତ୍ତମରୂପେ ବୁଝିପାରି ଅଛନ୍ତି ।

## ମୃତ ଗୌରୀଶଙ୍କର ।

ବଡ଼ ଦୁଃଖର ବିଷୟ ଗତବର୍ଷ ମଧ୍ୟରେ ଉତ୍କଳମାତାଙ୍କର ଏକ ସୁଯୋଗ୍ୟ ସନ୍ତାନ ବାବୁ ଗୌରୀଶଙ୍କର ରାୟ ବାହାଦୁର ଇହ ସଂସାର ତ୍ୟାଗ କରିଅଛନ୍ତି । ଏ ମହାତ୍ମା ଆପଣମାନଙ୍କ ନିକଟରେ ବିଶେଷ ପରିଚିତ । ଏ ଯୋଗୁଁ ଏହାଙ୍କର ପରିଚୟ ଦେବା ଅନାବଶ୍ୟକ । ସେ ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେଉଥିଲେ । ଓଡ଼ିଶାର ଉନ୍ନତି ପାଇଁ ସେ ଯେତେ ଯେତେ କାର୍ଯ୍ୟ କରିଯାଇ ଅଛନ୍ତି ତାହା ସମସ୍ତ ଭାବି ଦେଖିଲେ ତାହାଙ୍କ ପ୍ରତି ବିଶେଷ ଭକ୍ତି ଓ ଶ୍ରଦ୍ଧା ଜାତ ହୁଏ । ଆଜି ଯେଉଁ " ଉତ୍କଳ ଦୀପିକା " ଓଡ଼ିଆମାନଙ୍କ ଘରେ ଘରେ ପଢ଼ା ହେଉଅଛି, ତାହା ଗୌରୀଶଙ୍କରଙ୍କର ଅକ୍ଷୟ କୀର୍ତ୍ତିର ଏକ ଚିହ୍ନ ଅଟେ । ଯେଉଁ ଟାଉନ-ହଲରେ ଆଜିକାଲି ଶତ ଶତ ସଭା ସମିତି ହେଉଅଛି ତାହା ସେ ମହାତ୍ମା

Digitized by srujanika@gmail.com

ସର୍ବସାଧାରଣଙ୍କୁ ଦାନ କରି ଯାଇ ଅଛନ୍ତି । ଏହିପରି ଆହୁରି ଅନେକ ସତ୍କାର୍ଯ୍ୟମାନ ସେ କରି ଯାଇ ଅଛନ୍ତି ଓ ତହିଁପାଇଁ ସେ ଚିରସ୍ମରଣୀୟ ହୋଇ ଆମ୍ଭମାନଙ୍କର ଶ୍ରଦ୍ଧା ଓ ଭକ୍ତିଭାଜନ ହୋଇଅଛନ୍ତି ।

## ଔତ୍କଳୀୟ ବଙ୍ଗାଳିମାନଙ୍କ ସଭା ।

ସମ୍ମିଳନୀର ଉତ୍ପତ୍ତି ସମୟରେ ସ୍ଥିର ହୋଇଥିଲା ଯେ ଉତ୍କଳମାତାଙ୍କର ସମସ୍ତ ସନ୍ତାନମାନେ ମାତୃପୂଜାରେ ଯୋଗ ଦେଇ ପାରିବେ କିନ୍ତୁ କେତେକ ମନୋମାଳିନ୍ୟ ଯୋଗୁଁ ଓଡ଼ିଶାର ସ୍ଥାୟୀ ବଙ୍ଗାଳିମାନେ କେତେକ ସମୟ ଯୋଗ ଦେଇ ନ ଥିଲେ । ଅତଏବ ଆନନ୍ଦର ବିଷୟ ଏହି ଯେ ଓଡ଼ିଶାର ସ୍ଥାୟୀ ବଙ୍ଗାଳିମାନଙ୍କର ସଭା ଇତିମଧ୍ୟରେ ଏହି ସମ୍ମିଳନୀର ଅନ୍ତର୍ଭୁକ୍ତ ହୋଇଅଛି । ବୋଲିବା ବାହୁଲ୍ୟ ଯେଉଁ ବଙ୍ଗାଳିମାନେ ଏଠାରେ ପୁରୁଷାନୁକ୍ରମେ ଅଛନ୍ତି ଓ ରହିବେ ସେମାନଙ୍କର ଓ ଆମ୍ଭମାନଙ୍କର ସ୍ୱାର୍ଥ ସମାନ ଅଟେ ଓ ଉତ୍କଳମାତାଙ୍କର ଉନ୍ନତିସାଧନ ପାଇଁ କି ଓଡ଼ିଆ, କି ବଙ୍ଗାଳି, କି ମୁସଲମାନ ସମସ୍ତ ସନ୍ତାନମାନଙ୍କର ସମାନ ଭାବରେ ଚେଷ୍ଟା କରିବା ଉଚିତ, କାରଣ ତହିଁପାଇଁ ସମସ୍ତେ ସମାନ ଭାବରେ ଦାୟୀ ଅଟନ୍ତି ।

## ଇଉରୋପୀୟ ମହାଯୁଦ୍ଧ ।

ପ୍ରାୟ ଚାରିବର୍ଷ ହେଲା ଯେଉଁ ପୃଥିବୀବ୍ୟାପୀ ଘୋରଯୁଦ୍ଧ ଲାଗିଅଛି ତହିଁ ସମ୍ବନ୍ଧେ ଅବଶ୍ୟ ଆପଣମାନେ ସମସ୍ତେ କିଛି କିଛି ଜାଣନ୍ତି ସେ ସମ୍ବନ୍ଧେ ବିଶେଷ କିଛି କହିବା ଅନାବଶ୍ୟକ । ଏହି ଯୁଦ୍ଧ ଦ୍ୱାରା କେତେ ମହାପ୍ରାଣୀ ନଷ୍ଟ ଓ ଆହତ ହୋଇଅଛନ୍ତି ଓ କେତେ କୋଟି କୋଟି ଅର୍ଥ ବ୍ୟୟ ହୋଇଅଛି ତାହା ଭାବି ଦେଖିଲେ ଗୋଟିଏ ଭୟାନକ ଚିତ୍ରପଟ ଦେଖାଯାଏ । ନୃଶଂସ ଓ ବର୍ବର ଜର୍ମାନମାନେ ଏହି ଯୁଦ୍ଧ ପାଇଁ ଦାୟୀ ଅଟନ୍ତି । ଧର୍ମ ଓ ନ୍ୟାୟର ପକ୍ଷ ସମର୍ଥନ କରିବା ପାଇଁ ବ୍ରିଟିଶରାଜ ଏହି ଯୁଦ୍ଧରେ ଲିପ୍ତ ହୋଇଅଛନ୍ତି । ଏହି ଯୁଦ୍ଧର ଫଳ ଉପରେ ଆମ୍ଭମାନଙ୍କ ଭବିଷ୍ୟତ ମଙ୍ଗଳ ନିର୍ଭର କରେ । ଏଥି ଯୋଗୁଁ ସରକାର ବାହାଦୁରଙ୍କୁ ଧନ ଓ ଜନ ଦ୍ୱାରା ଯଥାସାଧ୍ୟ ସାହାଯ୍ୟ କରିବା ଆମ୍ଭମାନଙ୍କର ଉଚିତ ଓ ତାହାଙ୍କ ଜୟଲାଭ ପାଇଁ ସର୍ବଦା ପରମପିତା ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା ବିଧେୟ । ସୁଖର ବିଷୟ ଓଡ଼ିଶାବାସିମାନେ ଯୁଦ୍ଧରେ ଯଥାଶକ୍ତି ସାହାଯ୍ୟ ଦେଇଅଛନ୍ତି ।

## ଲୁଣ ପୋକ୍ତାନି ।

ଏହି ଦୀର୍ଘକାଳବ୍ୟାପୀ ଯୁଦ୍ଧ ଯୋଗୁଁ ଲୁଣର ମୂଲ୍ୟ କ୍ରମଶଃ ବୃଦ୍ଧି ହୋଇଅଛି । ଏଥିର କାରଣ ଏହି ଯେ ଲୁଣ ସୁବିଧାମତେ ଆମଦାନୀ ଓ ରପ୍ତାନୀ ହୋଇ ପାରୁ ନାହିଁ । ଇତିପୂର୍ବେ ଓଡ଼ିଶାର କେତେକ ସ୍ଥାନରେ ଲୁଣ ପ୍ରସ୍ତୁତ ହେଉଥିଲା । ସେ ସମୟରେ କେତେ ଗରିବ ଦୁଃଖୀ ମୂଲ ଲାଗି ପ୍ରତିପୋଷଣ ହେଉଥିଲେ ଓ ମଧ୍ୟ ସସ୍ତାଦରରେ ଲୁଣ ପାଉଥିଲେ । ବର୍ତ୍ତମାନ ଲୁଣର ମୂଲ୍ୟ

Digitized by srujanika@gmail.com

ବେଶୀ ହୋଇଥିବାରୁ ଗରିବ ଦୁଃଖୀମାନେ ବିଶେଷ କଷ୍ଟ ଭୋଗ କରୁଅଛନ୍ତି । ଲୁଣ ଅନ୍ୟମାନଙ୍କ ଅପେକ୍ଷା ଗରିବମାନଙ୍କର ବିଶେଷ ପ୍ରୟୋଜନୀୟ ପଦାର୍ଥ ଅଟେ । କେବଳ ଲୁଣ ସାହାଯ୍ୟରେ ସେମାନେ ସେମାନଙ୍କର ଏକମାତ୍ର ଖାଦ୍ୟ ଭାତ ଖାଇ ଚଳି ପାରିବେ । ପଶୁମାନେ ମଧ୍ୟ ଜୀବନ ଧାରଣ ପାଇଁ ଲୁଣ ଖାଆନ୍ତି । ବନ୍ୟ ପଶୁମାନେ ଲୁଣ ପରିବର୍ତ୍ତେ ଲୁଣ ମାଟି ଗୃଟି ଖାଆନ୍ତି । ଜୀବନ ଧାରଣ ପକ୍ଷେ ଲୁଣ ବିଶେଷ ପ୍ରୟୋଜନ ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । କିନ୍ତୁ ଦୁଃଖର ବିଷୟ ଆମ୍ଭ ଦେଶରେ ଲୁଣ ପୋଖତାନର ସୁବିଧା ଥିଲେହେଁ ଆମ୍ଭେମାନେ ବିଦେଶରୁ ଆମଦାନୀ ଲୁଣ ବ୍ୟବହାର କରୁଅଛୁଁ । ସୁସ୍ଥ ଶରୀରରୁ ରକ୍ତ ଜାତ ହୋଇ ଜୀବନ ରକ୍ଷା କରେ । କେବଳ ମୁମୂର୍ଷୁ ଅବସ୍ଥାରେ ଡାକ୍ତରମାନେ ରୋଗୀର ଶରୀରରେ ପଶୁମାନଙ୍କର ରକ୍ତ ପ୍ରବେଶ କରାନ୍ତି କିନ୍ତୁ ଏହି ରକ୍ତ ଦ୍ୱାରା ସ୍ଥାୟୀ ଉପକାର ହୁଏ ନାହିଁ । ସେହିପରି ଆମ୍ଭେମାନେ ଅନ୍ୟ ଦେଶ ଜାତ ଲୁଣ ଖାଉଅଛୁଁ ତଦ୍ଦ୍ୱାରା ଆମ୍ଭମାନଙ୍କର ବିଶେଷ ଉପକାର ହେଉ ନାହିଁ । ପ୍ରକୃତ ପକ୍ଷେ ଆମ୍ଭମାନଙ୍କର ଗଭର୍ଣ୍ଣମେଣ୍ଟ ଏଥିପାଇଁ ଦାୟୀ ଅଟନ୍ତି । ଗଭର୍ଣ୍ଣମେଣ୍ଟ ଆମ୍ଭମାନଙ୍କୁ ଲୁଣ ପୋଖତାନ କରିବାର ଅନୁମତି ଦେଉ ନାହାନ୍ତି । ବିଦେଶ ଜାତ ଲୁଣ ଉପରେ ମହାସୁଲ ନେଉ ଅଛନ୍ତି । ଏପ୍ରକାର ମହାସୁଲ ଅନ୍ୟ କୌଣସି ଦେଶରେ ଆଦାୟ ହୁଏ ନାହିଁ । ମାହାସୁଲ ଦେବା ପକ୍ଷେ ଆମ୍ଭମାନଙ୍କର ବିଶେଷ ଆପତ୍ତି ନାହିଁ କିନ୍ତୁ ଲୁଣ ପୋଖତାନ କରିବା ପାଇଁ ଅନୁମତି ଦେବା ଏକାନ୍ତ ବିଧେୟ ଓ ଯୁକ୍ତି ସଙ୍ଗତ ଅଟେ ।

ଗତବର୍ଷ ଲୁଣ ପୋଖତାନ ସମ୍ବନ୍ଧେ ଯେଉଁ ନିର୍ଦ୍ଧାରଣଟି ଧାର୍ଯ୍ୟ ହୋଇଥିଲା ତଦ୍ଦ୍ୱାରା ମୋ ପ୍ରତି ଯେଉଁ ଭାର ଦିଆଯାଇଥିଲା ତହିଁ ସମ୍ବନ୍ଧେ ମୁଁ କେତେକ ବିଷୟର ଅନୁସନ୍ଧାନ କରିଥିଲି ଓ ମଧ୍ୟ କର୍ତ୍ତୃପକ୍ଷମାନଙ୍କୁ ଜଣାଇ ଥିଲି । ସେ ବିଷୟରେ ଅନେକ ସୁବିଧା ଓ ଅସୁବିଧା ରହିଅଛି । ସୁଖର ବିଷୟ ମାନ୍ୟବର ଶ୍ରୀ ବାବୁ ଗୋପବନ୍ଧୁ ଦାସ ମହାଶୟ ଚିଲିକା ପ୍ରଭୃତି କେତେକ ସ୍ଥାନ ଦେଖି ଅନେକ ବୃତ୍ତାନ୍ତ ସଂଗ୍ରହ କରି ମାନ୍ୟବର ଛୋଟଲାଟ ସାହେବ ବାହାଦୁରଙ୍କ ସଭାରେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ତହିଁର ଉତ୍ତରରେ ଗଭର୍ଣ୍ଣମେଣ୍ଟ କହି ଅଛନ୍ତି ଯେ ଚିଲିକାରେ ଲୁଣ ପୋଖତାନ ବିଷୟ ବିଚାର କରାଯାଇ କୌଣସି କମ୍ପାନୀ ସହିତ ବନ୍ଦୋବସ୍ତ କରାଯିବ । ତାହା ହୋଇ ନ ପାରିଲେ ପାରିକୁଦର ରାଜା ନିଜେ ଅନୁମତି ନେଇ ଲୁଣ ପୋଖତାନ କରି ପାରିବେ କି ନା ବିଚାର କରାଯିବ । ଏଥିରୁ ଆଶା କରାଯାଏ ଅଳ୍ପ ସମୟ ମଧ୍ୟରେ ଓଡ଼ିଶାରେ ଲୁଣ ପୋଖତାନ କାର୍ଯ୍ୟ ପୁନରାୟ ଚଳିବ ।

## ସମସ୍ତ ଓଡ଼ିଆଙ୍କୁ ଏକ ଶାସନାଧୀନକରଣ ।

ଆମ୍ଭମାନଙ୍କ ମଧ୍ୟରୁ କେତେକ ବଙ୍ଗଶାସନାଧୀନ, କେତେକ ମାନ୍ଦ୍ରାଜ ଶାସନାଧୀନ, କେତେକ ମଧ୍ୟପ୍ରଦେଶ ଶାସନାଧୀନ ଓ କେତେକ ବିହାର-ଓଡ଼ିଶା ନୂତନ ପ୍ରଦେଶ ଶାସନାଧୀନ ଥିବାରୁ ନାନା ପ୍ରକାର ଅସୁବିଧା ଭୋଗ କରିବାକୁ ହେଉଥିବା ବିଷୟ ଆପଣମାନେ ଉତ୍ତମରୂପେ ଜାଣନ୍ତି । ଅଙ୍ଗ ବିଚ୍ଛିନ୍ନ

Digitized by srujanika@gmail.com

ହେଲା ପ୍ରାୟ ଅମ୍ଭେମାନେ ବର୍ତ୍ତମାନ ଖଣ୍ଡ ଖଣ୍ଡ ହୋଇ ରହିଅଛୁଁ ଓ ସେହି କାରଣରୁ ସମସ୍ତ ଅଙ୍ଗମାନଙ୍କର ସମାନ ଭାବରେ ପରିପୁଷ୍ଟ ହୋଇ ପାରୁ ନାହିଁ। ଅଧିକ ଦୁଃଖର ବିଷୟ ଏହି ଯେ ଓଡ଼ିଆମାନେ ଭିନ୍ନ ଭିନ୍ନ ସ୍ଥାନରେ ରହିବାରୁ ସେମାନଙ୍କ ମଧ୍ୟରୁ କେତେକ ଓଡ଼ିଆଭାଷା ଭୁଲି ଗଲେଣି। ଗତ ୬୦ ବର୍ଷ ମଧ୍ୟରେ ମେଦିନୀପୁର ଜିଲ୍ଲାର ଓଡ଼ିଆଭାଷୀଙ୍କ ସଂଖ୍ୟା ପ୍ରାୟ ଚାରିଲକ୍ଷ କମି ଯାଇଅଛି। ସେମାନେ ବର୍ତ୍ତମାନ ଅନ୍ୟ ଜାତିରେ ପରିଗଣିତ ହୋଇଅଛନ୍ତି। ସିଂହଭୂମ ପ୍ରଭୃତି ଯାଗାରେ ଓଡ଼ିଆ ପରିବର୍ତ୍ତେ ହିନ୍ଦି ପ୍ରଚଳନ ଥିବା ଯୋଗୁଁ ପିଲାମାନେ ଓଡ଼ିଆ ଭାଷାକୁ ହିନ୍ଦିରେ ତରଜମା କରି ଶିଖୁଛନ୍ତି।

ସମସ୍ତ ଓଡ଼ିଆମାନଙ୍କୁ ଏକ ଶାସନାଧୀନ କରି ଏହି ଅସୁବିଧା ନିବାରଣ ନିମିତ୍ତ ସମ୍ମିଳନୀ ବାରମ୍ବାର କର୍ତ୍ତୃପକ୍ଷମାନଙ୍କୁ ଜଣାଇ ଆସୁଥିଲେହେଁ ଅବଧି କିଛି ମାତ୍ର ଫଳ ହୋଇ ନାହିଁ। ସମ୍ମିଳନୀର ଗତ ଅଧିବେଶନରେ ଏହି କାର୍ଯ୍ୟ ପାଇଁ ଗୋଟିଏ କମିଟି ଗଠିତ ହୋଇଥିଲା। ଉକ୍ତ କମିଟି ଉପରେ ଏ ସମ୍ବନ୍ଧେ ଯାହା ଭଲ ବିବେଚନା କରିବେ ତାହା କରିବାର ଭାର ଦିଆ ଯାଇଥିଲା। ସେମାନେ ଗତ ବର୍ଷ ମଧ୍ୟରେ ଦୁଇଗୋଟି କାର୍ଯ୍ୟ କରିଅଛନ୍ତି।

## (୧) ଇଂରେଜୀ ଖବରକାଗଜ।

ଇଂରେଜୀ ଖବର କାଗଜର ଅଭାବ ସମସ୍ତ ଶିକ୍ଷିତ ଓଡ଼ିଆମାନେ ଅନୁଭବ କରୁଥିଲେ। ଇଂରେଜୀ ଖବରକାଗଜ ନ ଥିବାରୁ ଅମ୍ଭମାନଙ୍କର ଗୁହାରି ସର୍ବସାଧାରଣଙ୍କୁ ଓ ଗବର୍ଣ୍ଣମେଣ୍ଟଙ୍କୁ ଜଣାଇ ପାରି ନ ଥିଲୁଁ। ଇଂରେଜୀ ଖବର କାଗଜ ଦ୍ୱାରା ଅମ୍ଭମାନଙ୍କର ଅଭାବ ଅସୁବିଧା ଓ ସମସ୍ତ ପ୍ରକାର ଦୁଃଖ ସରକାରଙ୍କୁ ଜଣାଇ ଦିଆ ଯାଇଅଛି। ଏହି ଖବର କାଗଜଟି ନୂତନ ଆରମ୍ଭ କରାଯାଇଅଛି। ଏହା ଓଡ଼ିଆ ଜାତିର ମୁଖ ସ୍ୱରୂପ। ମୁଁ ଆଶାକରେ ଏହି କାଗଜଟି ଚିରସ୍ଥାୟୀ କରିବା କାରଣ ଆପଣମାନେ ଯଥାଶକ୍ତି ସାହାଯ୍ୟ କରିବେ। ଇଂରେଜୀ ଖବର କାଗଜ ନ ଥିଲେ କେବଳ ଓଡ଼ିଆରେ ଯେତେ ବକ୍ତୃତା କଲେ ଓଡ଼ିଶାର ବାହାରେ କେହି ବୁଝିବେ ନାହିଁ।

## (୨) ଭାରତ ସଚିବଙ୍କ ନିକଟ ଆବେଦନ।

ଭାରତ ସଚିବ ମହୋଦୟ ଭାରତବର୍ଷର ଶାସନ ପ୍ରଣାଳୀର ପରିବର୍ତ୍ତନ ଉଦ୍ଦେଶ୍ୟରେ କେତେକ ଦିନ ଭାରତବର୍ଷକୁ ଆସିଅଛନ୍ତି। ଭାରତବାସିମାନେ ଆତ୍ମଶାସନ ପ୍ରଣାଳୀର ପୂର୍ଣ୍ଣ ଦାୟିତ୍ୱ ବୁଝି ପାରିଛନ୍ତି କି ନା ଓ ବୁଝି ପାରିଥିଲେ ସେମାନେ ଶାସନ କାର୍ଯ୍ୟର ଭାର କେତେଦୂର ଗ୍ରହଣ କରି ପାରିବେ ତାହା ଜାଣିବା ତାହାଙ୍କର ଆସିବାର ପ୍ରଧାନ ଉଦ୍ଦେଶ୍ୟ ଅଟେ। ଏହି ସମୟରେ ଅନ୍ୟାନ୍ୟ ଜାତିମାନେ ଓ ଦେଶବାସିମାନେ ଆତ୍ମଶାସନର ଅଧିକାର ପାଇବା ପାଇଁ ତାହାଙ୍କ ନିକଟ ଉପସ୍ଥିତ ହୋଇଅଛନ୍ତି। କିନ୍ତୁ ଅମ୍ଭେମାନେ ଦେଖିଲୁଁ ଯେ ପ୍ରକୃତରେ ଆମ୍ଭର ଦେଶ ନାହିଁ। ଆମ୍ଭର ଦେଶ ଖଣ୍ଡ ଖଣ୍ଡ ଓ ଭିନ୍ନ ଭିନ୍ନ ଶାସନାଧୀନ ହୋଇ

Digitized by srujanika@gmail.com

ରହିଅଛି । ଏପରିସ୍ଥଳେ ଶାସନପ୍ରଣାଳୀର ପରିବର୍ତ୍ତନ ଚିନ୍ତା କରିବା ବୃଥା ! ଏଥିଯୋଗୁଁ ସର୍ବ ପ୍ରଥମେ ସମସ୍ତ ଓଡ଼ିଆମାନଙ୍କୁ ଏକତ୍ର ଓ ଏକ ଶାସନାଧୀନ କରିବା କାରଣ ଆମ୍ଭେମାନେ ଭାରତ ସରକାରଙ୍କ ନିକଟ ଆବେଦନ କରୁଅଛୁଁ । ଆମ୍ଭମାନଙ୍କର ଏହି ପ୍ରାର୍ଥନାଟି ସିଦ୍ଧ ହେଲେ, ପରେ ଶାସନପ୍ରଣାଳୀ ବିଷୟ ଆଲୋଚନା କରିବାକୁ ହେବ । ଆବେଦନର କି ଫଳ ହେବ ତାହା ବର୍ତ୍ତମାନ ପର୍ଯ୍ୟନ୍ତ ଜଣାଯାଇ ନାହିଁ । ବର୍ତ୍ତମାନ କିଛି ଫଳ ହେଉ ବା ନ ହେଉ ଯେ ପର୍ଯ୍ୟନ୍ତ ସମସ୍ତ ଓଡ଼ିଶା ଏକତ୍ର ହୋଇ ନାହିଁ ସେପର୍ଯ୍ୟନ୍ତ ଆମ୍ଭମାନଙ୍କର ଆଶା ପୂର୍ଣ୍ଣ ହେବ ନାହିଁ ଓ ଆମ୍ଭେମାନେ ବରାବର ଆବେଦନ, ନିବେଦନ ଓ ଆନ୍ଦୋଳନ କରୁଥିବୁଁ ।

## କପାଚାଷ ।

ଏହି ଭୀଷଣ ଯୁଦ୍ଧ ଯୋଗୁଁ ଲୁଗା ମଧ୍ୟ ଦୁର୍ମୂଲ୍ୟ ହୋଇଅଛି । ଓଡ଼ିଶାରେ ଇତପୂର୍ବେ ବହୁପରିମାଣରେ କପାଚାଷ ହେଉଥିଲା । ସେ ସମୟରେ ଓଡ଼ିଶାବାସି-ମାନଙ୍କର ସମସ୍ତ ଆବଶ୍ୟକୀୟ ଲୁଗାମାନ ଏହିଠାରେ ପ୍ରସ୍ତୁତ ହେଉଥିଲା । ଗରିବ ଓ ଆଶ୍ରୟହୀନା ବିଧବାମାନେ ଅର୍ଟୀ ଦ୍ୱାରା ସୂତାକାଟି ଜୀବିକା ନିର୍ବାହ କରୁଥିଲେ । କ୍ରମଶଃ ବିଲାତ ଲୁଗାର ଆମଦାନି ଆରମ୍ଭ ହେଲା । ଓଡ଼ିଆମାନେ ଦେଶୀଲୁଗା ଛାଡ଼ି ବିଲାତ ଲୁଗା ପିନ୍ଧିବାକୁ ଆରମ୍ଭ କଲେ । କ୍ରମେ ଦେଶୀ ଲୁଗାର କାରବାର କମିଯାଇ ବିଲାତ-ଲୁଗାର ବିଶେଷ ବ୍ୟବହାର ହେଲା । ଶେଷରେ ଦେଶୀଲୁଗାର କାରବାର ବିଶେଷ କମିଗଲା । କପାଚାଷ କ୍ରମଶଃ ବନ୍ଦ ହେଲା । ତା' ସଙ୍ଗେ ସୂତାକଟା ମଧ୍ୟ ବନ୍ଦ ହେଲା । ବର୍ତ୍ତମାନ କୌଣସି ଗ୍ରାମରେ ପହଞ୍ଚି ଗୋଟିଏ ଅର୍ଟୀ ଖୋଜିଲେ ପାଇବା କଠିଣ । ପୂର୍ବପରି କପାଚାଷ ପ୍ରଚଳିତ ଥିଲେ ବର୍ତ୍ତମାନ ଲୁଗାର ଦୁର୍ମୂଲ୍ୟ ସମୟରେ ଆଦୌ କଷ୍ଟ ହୁଅନ୍ତା ନାହିଁ । ବିଲାତ ଲୁଗା ଅଭାବରେ ଦେଶୀଲୁଗା-ଦ୍ୱାରା ଲୋକେ ସୁବିଧାରେ ଚଳି ପାରନ୍ତେ । ଗୃହସ୍ଥମାନେ କପା ବିକ୍ରୟ କରି ଯଥେଷ୍ଟ ଆୟ କରି ପାରନ୍ତେ । ନିଃସହାୟ ବିଧବାମାନେ ସୂତା କାଟି ଜୀବିକା ନିର୍ବାହ କରି ପାରନ୍ତେ । ତନ୍ତିମାନେ ଲୁଗା ବୁଣି ସୁଖରେ ଧନପାତ କରନ୍ତେ ଓ ବ୍ୟବସାୟୀମାନେ ଲୁଗା ବିକ୍ରୟ କରି କିଛି କିଛି ଲାଭ କରି ପାରନ୍ତେ ।

ଏ ସମ୍ବନ୍ଧରେ ଗୋଟିଏ କଥା କହିବା ଆବଶ୍ୟକ । ମନୁଷ୍ୟମାନଙ୍କର ବୟସ-ବୃଦ୍ଧି ସଙ୍ଗେ ସଙ୍ଗେ ଜ୍ଞାନୋଦୟ ହୁଏ । ଜ୍ଞାନୋଦୟ ସଙ୍ଗେ ସଙ୍ଗେ ଲଜ୍ଜା ଉପସ୍ଥିତ ହୁଏ । ଲଜ୍ଜା ସଙ୍ଗେ ସଙ୍ଗେ ଲଜ୍ଜା ନିବାରଣ ପାଇଁ ଲୁଗା ପିନ୍ଧିବା ଆବଶ୍ୟକ ବୋଧ ହୁଏ । ଏହି ଲଜ୍ଜା ନିବାରଣର ଉପାୟ ଆମ୍ଭେମାନେ ନିଜେ ନିଜେ କରି ନ ପାରି ବିଦେଶୀୟମାନଙ୍କ ଉପରେ ନିର୍ଭର କଲେ ଅନୁମାନ କରିବାକୁ ହେବ ଯେ ଆମ୍ଭମାନଙ୍କର ବୟସ ହୋଇଥିଲେହେଁ ଜ୍ଞାନୋଦୟ ବା ଲଜ୍ଜା ନିବାରଣ ଶକ୍ତି ହୋଇ ନାହିଁ ।

ଅତଏବ ବର୍ତ୍ତମାନ ସମୟ ଓ ଅବସ୍ଥା ଦୃଷ୍ଟିରେ ଯଥେଷ୍ଟ ପରିମାଣରେ କପାଚାଷ ହେବାପକ୍ଷେ ଆମ୍ଭମାନଙ୍କର ଯତ୍ନବାନ୍ ହେବା ଉଚିତ । ସରକାର

Digitized by srujanika@gmail.com

ବାହାଦୁର କୃଷି ସମ୍ବନ୍ଧେ ଉନ୍ନତି ସାଧନ ପାଇଁ ଅନେକ ପ୍ରକାର ଚେଷ୍ଟା ଓ ଯତ୍ନ କରୁଅଛନ୍ତି ଓ ତହିଁପାଇଁ ଅମ୍ଭେମାନେ ବିଶେଷରୂପେ କୃତଜ୍ଞ ଅଛୁଁ କିନ୍ତୁ ଯେପର୍ଯ୍ୟନ୍ତ ଆମ୍ଭେମାନେ ନିଜେ ନିଜେ ଚେଷ୍ଟା ଓ ଯତ୍ନ ନ କରିବା ସେପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଫଳଲାଭ ଅସମ୍ଭବ ।

ଆପଣମାନଙ୍କର ଆଉ ଅଧିକ ସମୟ ନଷ୍ଟ କରିବା ଉଚିତ ବୋଧ କରୁ ନାହିଁ । ଏଯୋଗୁଁ ଏହିଠାରେ ଷାନ୍ତ ହେଲି । ଆପଣମାନେ ଏତେ କଷ୍ଟ ସ୍ୱୀକାର କରି ଆଜି ଏଠାରେ ଉପସ୍ଥିତ ହୋଇଥିବାରୁ ଆପଣମାନଙ୍କୁ ପୁନଶ୍ଚ ଅନ୍ତରର ସହିତ ଅଶେଷ ଧନ୍ୟବାଦ ଦେଇ ସବିନୟ ପ୍ରାର୍ଥନା କରୁଅଛି କି ଅନୁଗ୍ରହପୂର୍ବକ ଅମ୍ଭମାନଙ୍କ ଶ୍ରଦ୍ଧା ଓ ଭକ୍ତି ଗ୍ରହଣକରି ସମସ୍ତ ତ୍ରୁଟି ମାର୍ଜନା କରିବା ହେବ ।

---

## ୫ । ସଭାପତି ନିର୍ବାଚନ ।

ତତ୍ପରେ ମାନ୍ୟବର ବାବୁ ବ୍ରଜସୁନ୍ଦର ଦାସ ବି,ଏ, ମହୋଦୟ ଅଭ୍ୟର୍ଥନା ସମିତିର ସଭାପତି କର୍ତ୍ତୃକ ଆଦିଷ୍ଟ ହୋଇ ଉତ୍କଳର ବ୍ୟାସକବି ବୃଦ୍ଧ ଫକୀରମୋହନଙ୍କୁ ନିମ୍ନଲିଖିତ ମତେ ମାତୃପୂଜାରେ ଆଚାର୍ଯ୍ୟ ସ୍ୱରୂପ ବରଣ କଲେ ।

ସଭାପତି ମହାଶୟ, ଭାଇ ଓ ଭଉଣୀମାନେ;

ଆପଣମାନେ ପ୍ରଥମତଃ ପୂଜ୍ୟପାଦ ଭାଇ ( ମଧୁବାବୁ ) ଙ୍କର ମାତୃପୂଜା ଶୁଣିଲେ ଏବଂ ଅଭ୍ୟର୍ଥନା ସମିତିର ସଭାପତିଙ୍କ ଅଭିଭାଷଣ ଶୁଣିଲେ । ଆମ୍ଭେମାନେ ଏଠାରେ ମାତୃପୂଜା କରିବାକୁ ଏକତ୍ରିତ ହୋଇଅଛୁଁ । ଏହା ସର୍ବଜନ ସବୁ ଧର୍ମରେ ଅଛି ଯେ କୌଣସି ପୂଜା କରିବାକୁ ଗଲେ ଜଣେ ପୁରୋହିତ ଆବଶ୍ୟକ । ବର୍ତ୍ତମାନ ମଧ୍ୟ ଏହି ମାତୃପୂଜା ନିମନ୍ତେ ଜଣେ ପୁରୋହିତ ଦରକାର । ତେବେ ସେ ପୁରୋହିତ କିଏ ହେବ ଏବଂ ଏ ମାତୃପୂଜା କିପରି ହେବ, ତାହା ଆମ୍ଭମାନଙ୍କର ଭାବିବାର କଥା । ବର୍ତ୍ତମାନ ଆପଣ ଜାତୀୟ କୀର୍ତ୍ତନରେ ଶୁଣିଲେ "ସ୍ୱାର୍ଥମେଧଯଜ୍ଞ" ସମ୍ବନ୍ଧରେ—

"ଜାତି ପ୍ରେମବହ୍ନି ପ୍ରଜ୍ୱଳିତ କରି ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥ ମେଧ ଯଜ୍ଞ' ଗୁରୁଅଟେ ନାଚ ଛାତିକୁ ମିଶାଇ ଛାତି ।"

ବର୍ତ୍ତମାନ ଏ ମାତୃପୂଜା ବେଦୀରେ ସେହି "ସ୍ୱାର୍ଥମେଧଯଜ୍ଞ" କରିବାକୁ ହେବ । ଭାଇମାନେ, ଆପଣମାନେ ମା'ଙ୍କ ମୂର୍ତ୍ତି ହୃଦୟରେ ବେଶ୍‌ରୂପେ ଅଙ୍କନ କରି ପାରି ଅଛନ୍ତି ସୁତରାଂ "ସ୍ୱାର୍ଥମେଧଯଜ୍ଞ"ର ପ୍ରୟୋଜନୀୟତା ବୁଝିପାରୁଥିବେ । ଅମ୍ଭେମାନେ ଯେଉଁଦିନ ଅଶ୍ୱମେଧଯଜ୍ଞ, ରାଜସୂୟ ଯଜ୍ଞ କରୁଥିଲୁ ସେଦିନ ନାହିଁ, ସେ କୃଷ୍ଣ ନାହିଁ, ସେ ମଥୁରା ନାହିଁ, ସେ ରାମ ନାହିଁ, ସେ ଅଯୋଧ୍ୟା ନାହିଁ । ବର୍ତ୍ତମାନ ଅମ୍ଭମାନଙ୍କର ଗତି ମୁକ୍ତିର ଉପାୟ କେବଳ 'ସ୍ୱାର୍ଥମେଧଯଜ୍ଞ' । ଏ ସ୍ୱାର୍ଥମେଧଯଜ୍ଞ ଦ୍ୱାରା ଅମ୍ଭମାନଙ୍କର ଇହ ପରକାଳରେ ଗତି ମୁକ୍ତି ଅଛି । ଏହା ଦ୍ୱାରା ଅମ୍ଭମାନଙ୍କ ଉପରେ ଧର୍ମ ଦେବତା, ତଳେ ବସୁମାତା ପ୍ରୀତ ହୋଇ

Digitized by srujanika@gmail.com

ପାରନ୍ତି ସୁତରାଂ ସେହି ମାତୃପୂଜା ସକାଶ, ସେହି ସ୍ୱାର୍ଥମେଧଯଜ୍ଞ ସକାଶ ମୁଁ ଉତ୍କଳର ବ୍ୟାସ କବି ବୃଦ୍ଧ ଫକୀରମୋହନଙ୍କୁ ଅଗ୍ରର୍ଯ୍ୟ ରୂପରେ ବରଣ କରୁଅଛି । ସେ କାହାରିଠାରେ ଅପରିଚିତ ନୁହନ୍ତି । ସେ ତାଙ୍କ ପୂର୍ବପୁରୁଷଙ୍କ ସେନାପତି ଉପାଧି ଧରି ଜନ୍ମ ଗ୍ରହଣ କରିଅଛନ୍ତି । ଏ ଉପାଧି ସେ ବୃଥା ଧାରଣ କରି ନାହାନ୍ତି । ଯେତେବେଳେ ବଙ୍ଗାଳୀମାନେ ନାନା ଷଡ଼ଯନ୍ତ୍ର କରି ଉତ୍କଳରୁ ଓଡ଼ିଆଭାଷା ଉଠାଇ ଦେଇ ତତ୍ପରିବର୍ତ୍ତେ ବଙ୍ଗଭାଷା ପ୍ରଚଳନ କରିବାର ଉଦ୍ୟମ କରୁଥିଲେ ସେତେବେଳେ ବ୍ୟାସ ଫକୀରମୋହନ ପ୍ରକୃତ ସେନାପତିରୂପେ ଠିଆ ହୋଇ ଯୁଦ୍ଧ କରିଥିଲେ । ତାଙ୍କଯୋଗୁଁ ଆଜି ଉତ୍କଳଭାଷା ରକ୍ଷାପାଇଛି । ସେ ଅମ୍ଭମାନଙ୍କର ଭାଷାର ସେନାପତି, ସାହିତ୍ୟର ସେନାପତି । ଯେ ଭାଷା ପାଇଁ ସମସ୍ତ ଜୀବନ ଢାଳି ଦେଇ ଅକାତର ପରିଶ୍ରମ କରିଅଛନ୍ତି, ଯେ ଆଜିପର୍ଯ୍ୟନ୍ତ ସାହିତ୍ୟର ଉନ୍ନତି କରୁଅଛନ୍ତି, 'ଭାଷାର ଲୋପ ନ ହେଉ' ଏଥିପାଇଁ ଯେ ସମଗ୍ର ଜୀବନବ୍ୟାପୀ ସଂଗ୍ରାମ କରି ଆସୁଅଛନ୍ତି, 'ଉତ୍କଳ ଭାରତର ଗୋଟିଏ ବିଶିଷ୍ଟ ଜାତିରୂପେ ପରିଗଣିତ ହେଉ' ଏହି କାମନା ହୃଦୟରେ ପୋଷଣ କରି ସେଥିପାଇଁ ସତତ ଚେଷ୍ଟା କରୁଅଛନ୍ତି, ମୁଁ ସେହି ବ୍ୟାସକବି ଫକୀରମୋହନଙ୍କୁ ଏହି ଜାତୀୟ ଯଜ୍ଞର ପୁରୋହିତରୂପେ ବରଣ କରୁଅଛି । ପୁରୋହିତଙ୍କ ପ୍ରତି ଯେପରି ସମ୍ମାନ ଦେଖାଯାଇ ଥାଏ, ଆଜି ଅମ୍ଭେମାନେ ତାଙ୍କପ୍ରତି ସେହିପରି ସମ୍ମାନ ଦେଖାଇବୁଁ ।

ଶ୍ରୀଯୁକ୍ତ ଜଗତ୍‌ବଲ୍ଲଭ ଘୋଷ ଏ ପ୍ରସ୍ତାବକୁ ଅନୁମୋଦନ କଲେ ।

ଶ୍ରୀଯୁକ୍ତ ମହନ୍ତ ଗଦାଧର ରାମାନୁଜ ଦାସ ମହୋଦୟ ଏ ପ୍ରସ୍ତାବକୁ ସମର୍ଥନ କଲେ ।

ଅବଶେଷରେ ପଣ୍ଡିତ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଅଗ୍ରର୍ଯ୍ୟ ମହାଶୟ ଏ ପ୍ରସ୍ତାବକୁ ସମର୍ଥନ କରି କହିଲେ ;—

ଭାଇମାନେ,

ଏପରି ବ୍ୟକ୍ତି ଏ ସଭାର ଅଗ୍ରର୍ଯ୍ୟ ହେବା ଉଚିତ ଯେ କି ସମସ୍ତ ସ୍ୱାର୍ଥ ତ୍ୟାଗ କରିଅଛି । ସେହି ସ୍ୱାର୍ଥ ତ୍ୟାଗକୁ ଆଦର୍ଶ ଜ୍ଞାନ କରି ତାଙ୍କୁ ସଭାର ଅଗ୍ରର୍ଯ୍ୟ ରୂପରେ ବରଣ କରାଯାଇ ପାରେ । ସ୍ୱାମୀ ଶଙ୍କରାଚାର୍ଯ୍ୟ—ସେ ଜଣେ ଫକୀର ଥିଲେ, ମାତ୍ର ଆଜି ତାଙ୍କ ଆଦର୍ଶ ଅନୁକରଣ କରି ଭାରତ ଧନ୍ୟ ହୋଇଅଛି । ଫକୀରମୋହନ ଭବିଷ୍ୟତରେ ଆଦର୍ଶ ସ୍ଥାନୀୟ ହେବେ ବୋଲି ତାଙ୍କ ପିତା ତାଙ୍କୁ ଯଥାର୍ଥରେ "ଫକୀର" ନାମ ଦେଇ ଅଛନ୍ତି । ଯେ ଲୋକଙ୍କୁ ନିଃସ୍ୱାର୍ଥ ଶିକ୍ଷା ଦେଉଅଛନ୍ତି ସେହି ଲୋକ ଶିକ୍ଷକ ଫକୀରମୋହନଙ୍କୁ ଅମ୍ଭେମାନେ ସଭାପତି ପଦରେ ବରଣ କରୁଛୁ ।

ଉଲ୍ଲିଖିତ ବିଷୟଗୁଡ଼ିକ ସମସ୍ତେ ଆନନ୍ଦର ସହିତ ଗ୍ରହଣ କରିବା ପରେ ଉତ୍କଳର ବ୍ୟାସକବି ବୃଦ୍ଧ ଫକୀରମୋହନ ସଭାପତି ଆସନ ଅଲଂକୃତ କଲେ ।

---

Digitized by srujanika@gmail.com

୬ । ବାଲେଶ୍ୱରର ପ୍ରତିନିଧି ଶ୍ରୀଯୁକ୍ତ ମୁକୁନ୍ଦ ପ୍ରସାଦ ଦାସ ଗତବର୍ଷର ବିବରଣୀ ପାଠକଲେ ।

---

୭ । ଅଭ୍ୟର୍ଥନା ସଭାର ସମ୍ପାଦକ ଯେଉଁମାନେ ମାତୃପୂଜାରେ ଯୋଗ ଦେଇ ନ ପାରି ସହାନୁଭୂତିସୂଚକ ପତ୍ରମାନ ଲେଖିଥିଲେ ସେମାନଙ୍କର ନାମୋଲ୍ଲେଖ ସଙ୍ଗେ ସଙ୍ଗେ ପତ୍ରମାନଙ୍କ ମଧ୍ୟରୁ ବିଶେଷ ବିଶେଷ ଉଲ୍ଲେଖ ଯୋଗ୍ୟ ଅଂଶମାନ ପଢ଼ି ଶୁଣାଇ ଦେଇଥିଲେ । ଉକ୍ତ ପତ୍ରପ୍ରେରକମାନଙ୍କ ନାମ ନିମ୍ନରେ ଦିଆଗଲା ଏବଂ ଉକ୍ତ ପତ୍ରମାନଙ୍କ ମଧ୍ୟରୁ ଉଲ୍ଲେଖଯୋଗ୍ୟ ଅଂଶଗୁଡ଼ିକ ଏହି ପୁସ୍ତକର ଶେଷଭାଗରେ ପରିଶିଷ୍ଟରେ ଦିଆ ଯାଇଅଛି ।

## ପତ୍ରପ୍ରେରକମାନଙ୍କର ନାମ ।

ଶ୍ରୀଯୁକ୍ତ ରାଜା ବାହାଦୁର—ଢେଙ୍କାନାଳ
,, ମହାରାଜା ବାହାଦୁର—ଆଠଗଡ଼ ।
,, ରାଜାସାହେବ ମଞ୍ଜୁଷା ।
,, ବିକ୍ରମଦେବ ବର୍ମା—ବିଶାଖାପଟ୍ଟନ ।
,, ମାହେଶ୍ୱରପ୍ରସାଦ ଦେଓ —ଲକ୍ଷ୍ମୀଗଡ଼ ।
,, ରାଜାସାହେବ—ଆଠମଲ୍ଲିକ ।
,, ରାଜାସାହେବ—ବଳରାମପୁର ।
,, ଯୁବରାଜ ସାହେବ—କେଉଁଝର ।
,, ରାୟ ବାହାଦୁର ଜମିଦାର—ବୁଢ଼ାସମ୍ବର ।
ଶ୍ରୀମନ୍ ମହାରାଜା—ସ୍ୱର୍ଣ୍ଣପୁର ।
ଶ୍ରୀଯୁକ୍ତ ଚନ୍ଦ୍ରାମଣି ମହାନ୍ତ—ଇଚ୍ଛାପୁର ।
ପଣ୍ଡିତ ଶ୍ରୀମାଗୁଣି ମିଶ୍ର—ରାଜକବିରାଜ, ପୁରୀ ।
ଶ୍ରୀଯୁକ୍ତ ଏମ୍, ଏସ୍, ଜେନା— " ମୋହର " ଏଡ଼ିଟର, କଣ୍ଟାଇ ।
,, ଭଗିରଥି ପଦ୍ୟାଳଙ୍କାର—"ଗଡ଼ଜାତବାସିନୀ" ସମ୍ପାଦକ ।
,, ବୈଷ୍ଣବ କବିଚନ୍ଦ୍ର ରାଜଗୁରୁ—ବୃହତ୍‌ଖେମୁଣ୍ଡି ।
,, ବାବୁ ଅନନ୍ତ ମାଲିକଦାର—ଜୟନ୍ତପୁର, ଗଞ୍ଜାମ ।
,, ଶ୍ରୀନାଥ ସାମନ୍ତ ଦେୱାନ୍—ଆଠଗଡ଼ ।
,, ମୃତ୍ୟୁଞ୍ଜୟ ତ୍ରିପାଠୀ କାବ୍ୟତୀର୍ଥ, ସମ୍ପାଦକ, ଚନ୍ଦ୍ର, ଚନ୍ଦ୍ରଶେଖର ସ୍କୁଲ-କମିଟି, ପୁଟିଆ, ମେଦିନୀପୁର ।
,, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ—ଗୁଣ୍ଡିବସା ।
,, ଗୋପୀନାଥ ରାଜଗୁରୁ—ଯୁବକ ସମିତି ସଭାପତି, ସ୍ୱର୍ଣ୍ଣଖେମୁଣ୍ଡି ଗଞ୍ଜାମ ।
,, ଶ୍ୟାମସୁନ୍ଦର ଦାସ ଗୋସ୍ୱାମୀ ପଦ୍ୟାଳଙ୍କାର, ସମ୍ପାଦକ, ଜନାସୁକ ପାଠାଗାର, ପୁରୁଗ୍ରାମ, ଧରକୋଟ ।

Digitized by srujanika@gmail.com

ଶ୍ରୀଯୁକ୍ତ ଦୈତାରି ପ୍ରସାଦ ଦାସ—ବାଲେଶ୍ୱର ।

,, ବାଞ୍ଛାନିଧି ପଟ୍ଟନାୟକ ଅଃ ଦେଓ୍ୱାନ—ଢେଙ୍କାନାଳ ।

,, କାଶୀନାଥ ମହାପାତ୍ର—ଗୃଇଁବସା ।

,, ଗୋବିନ୍ଦଚନ୍ଦ୍ର ମିଶ୍ର—ଏଡ଼ିସନେଲ ଟିଚର, ହାଇସ୍କୁଲ, ସୋନପୁର ।

,, ଭଗବାନ ସାମନ୍ତରା, ମଦନପୁର—ପୁରୀ ।

,, ଲୋକନାଥ ମଲ୍ଲିକ—ବରଗଡ଼ ।

,, କାହ୍ନୁଚରଣ ସାମନ୍ତରା—ନାଥପୁର—କଟକ ।

,, ବନ୍ଧୁ ସେନାପତି—କବାଟବନ୍ଧ—ଢେଙ୍କାନାଳ ।

,, ନନ୍ଦକିଶୋର କାନନଗୋ—ଅବ୍ ଏ: ସବଜଜ-ବନକା-ସୋନପୁର ।

,, ହରିହର ମିଶ୍ର, ଶିକ୍ଷକ—ଅନୁଗୁଳ ।

,, ଶ୍ୟାମବନ୍ଧୁ ଦାସ, ଯାଆଁଳା—ପୁରୀ ।

,, ସୋମନାଥ ମହାନ୍ତି—ଇଚ୍ଛାପୁର ।

,, ଚଢ଼ଧୂସ୍ରି ଗୋପବନ୍ଧୁ ଦାସ—ଗଜରାଜପୁର ।

,, ଚିନ୍ତାମଣି ପଟ୍ଟନାୟକ, ସେରସ୍ତାଦାର—ବଳରାମପୁର ।

,, କାଶିନାଥ ଲେଙ୍କା—ଫତେପୁର ।

,, ବାଲୁଙ୍କେଶ୍ୱର ମିଶ୍ର, ବରଗଡ଼—ସମ୍ବଲପୁର ।

ଶ୍ରୀମତୀ ରମାସୁନ୍ଦରୀ ଦାସ, ମହିଳା ସମାଜର ସମ୍ପାଦିକା—ଶିବଦାସପୁର,
ପୋଃ ଯାଜପୁର । କଟକ

ଶ୍ରୀଯୁକ୍ତ ଚୈତନ୍ୟ ସାହୁ, ଜୁଃ ଏସ୍ ସ୍କୁଲ, ଉଲୁପୁଡ଼

,, ଗୋପବନ୍ଧୁ ଦାସ, ବର । ପ୍ର । କଳାମାଟିଆ

,, ବାମନଚରଣ ଦାସ ,, ,,

,, ପଙ୍କଜ ପ୍ରଧାନ ,, ,,

,, କଳ୍ପତରୁ ପାଢ଼ୀ ହିଞ୍ଜିଳିକାଟୁ ଗଞ୍ଜାମ

,, ଦୋଳଗୋବିନ୍ଦ ସମରସିଂହ ମହାପାତ୍ର—ମହନପୁର

,, ବିଶ୍ୱନାଥ କାନୁନଗୋ ପୁରଣ

,, ଅଚ୍ୟୁତାନନ୍ଦ ପଣ୍ଡା ରମ୍ଭେଇ

,, ଲକ୍ଷ୍ମୀକୃଷ୍ଣ ରାଜ ପଟ୍ଟନାୟକ ରମ୍ଭା

,, ହରିହର ସଦସ୍ୟ ଧୂଆଁଗୁଇ ଧୁମୁସର

,, ଯୋଗେଶ୍ୱର ଦାସ କୁମୁଡ଼ା ଇଚ୍ଛାପୁର

,, ଲିଙ୍ଗରାଜ ପଟ୍ଟଯୋଷୀ ବାଣପୁର

,, କୃଷ୍ଣମୋହନ ପଣ୍ଡା ଅହଲ୍ୟାସ

,, ରାମକୃଷ୍ଣ ପଟ୍ଟନାୟକ, ଦେଓ୍ୱାନ ତିଗିରିଆ

,, ଶ୍ରୀ ୧୦୮ ଶଙ୍କର ରାମକୃଷ୍ଣାନନ୍ଦ ସରସ୍ୱତୀ ସ୍ୱାମୀ, ଶଙ୍କରାନନ୍ଦମଠ—ପୁରୀ ।

,, ଲିଙ୍ଗରାଜ ଦୋରା—ଖୋରଧା ।

Digitized by srujanika@gmail.com

ଶ୍ରୀଯୁକ୍ତ ଗୋପୀନାଥନନ୍ଦ ଶର୍ମା—ପାରଳାଖେମୁଣ୍ଡି ।
ଗଜପତିପୁର ଅନ୍ୟମାନଙ୍କର ଅନେକ ସଭ୍ୟ ।
,, ଗଡକୃଷ୍ଣଦାଶ ଶର୍ମା—ରାଜପୁରୋହିତ—ଅନୁଗୁଳ ।
,, ଭଗବାନ ମହାପାତ୍ର—ଜଗନ୍ନାଥପ୍ରସାଦ ।
,, କୃଷ୍ଣଚନ୍ଦ୍ର ପଟ୍ଟନାୟକ—ଆନନ୍ଦପୁର, କେଉଁଝର ।
,, ନୀଳମଣି ବନ୍ଦ୍ୟୋପାଧ୍ୟାୟ—ସମ୍ପାଦକ—"ଉତ୍କଳମଧୁପ"—ବଡଖେମୁଣ୍ଡି ।
,, ପଞ୍ଚାନନପାଣି—ମୁକ୍ତିଆର—ପୁରୁଲିଆ ।
,, ଦୟାନିଧି ଶୈଳିଆ—ତୋଷଣ୍ଡା ।
,, ଭାଗବତ ପଟ୍ଟନାୟକ—ହେ. ପଣ୍ଡିତ, ଭୀମପୁର, ଉ; ପ୍ରା; ସ୍କୁଲ, ବାଣପୁର ।
,, ଗୋପାଳପ୍ରସାଦ ସିଂହ—ରାମବାଗ—କଟକ ।
,, ପଣ୍ଡିତ ବିଶ୍ୱନାଥ ମହାପାତ୍ର—ସଂସ୍କୃତସ୍କୁଲ—ପୁରୀ ।
,, ତ୍ରୈଲୋକ୍ୟନାଥ ମହାପାତ୍ର—ବାଣପୁର ।
,, କମିଶନର ସାହେବ—ଓଡ଼ିଶାଡିଭିଜନ ।
,, ଜଜସାହେବ—କଟକ ।
,, ମାଜିଷ୍ଟ୍ରେଟ ସାହେବ—କଟକ ।
,, ପ୍ରିନ୍ସିପାଲ ସାହେବ—ରେ; କଲେଜ—କଟକ ।
,, ଜମିଦାର ଯୋଗେନ୍ଦ୍ରନାଥ ବୋଷ—କଟକ ।
,, ସମ୍ପାଦକ—ଗଡ଼ଜାତବାସିନୀ—ତାଳଚେର ।
,, ପୂର୍ଣ୍ଣେନ୍ଦୁ ନାରାୟଣ ସିଂହ—ପୁରୁଲିଆ, ଖାଡ଼ଙ୍ଗାପେଠ ।
ମି: ବି: ଦାସ—ବମ୍ବେ ।
,, ଶାନ୍ତିଶେଖରେଶ୍ୱର ରାଏ, ଏମ୍, ଏ,—ସମ୍ପାଦକ—"ରତ୍ନାକର" ପୁରୀ ।
,, ବାବୁରାମ ବାଲମୋହନ ମହାନ୍ତି—ଗଡପଡ଼ା; ରୁପସା ।
,, ଜୟମଙ୍ଗଳ ରଥ—ସମାଜମିତ୍ର ଅଫିସ—ଧରାକୋଟ ।
,, ମଧୁସୂଦନ ପାଣିଗ୍ରାହୀ—ବରଂପୁର—ଗଞ୍ଜାମ ।
ମିଃ ଡାନିଏଲ ମହାନ୍ତି—ବରଂପୁର—ଗଞ୍ଜାମ ।
,, ରାଜାସାହେବ—ତାଳଚେର ।
,, ଦାଶରଥି ଶୂର ଦେଓ—ହିନ୍ଦୋଳ ।
,, ବୈଦ୍ୟନାଥ ସିଂହ—ପୁରୀ ।
,, କେ, ଭି, ଜନାର୍ଦ୍ଦନ ରାଓ—କଳିଙ୍ଗାପଟ୍ଟମ ।

---

## ୮ । ସଭାପତିଙ୍କ ଅଭିଭାଷଣ ।

ନବୀନ ସଭାପତି ସରହଂସ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ତାଙ୍କର ଅଭିଭାଷଣ ପାଠ କରିବା ପୂର୍ବରୁ କହିଲେ;—

Digitized by srujanika@gmail.com

ମୁଁ ଯେତେବେଳେ ବାଲେଶ୍ୱରରେ ସମ୍ମିଳନୀର ସଭାପତି ହେବାକୁ ଅନୁରୁଦ୍ଧ ହୋଇଲି, ସେତେବେଳେ ମୁଁ ମନେ କଲି ମୋତେ—ଏହି ଜରାଜୀର୍ଣ୍ଣ ବୁଢ଼ାଟାକୁ କାହିଁକି ଟେଣା ଓଟର କଲେ ? ଏ ସମ୍ମିଳନୀରେ ସମସ୍ତଙ୍କର ସମାନ ଅଧିକାର ; ଯୁକ୍ତରାଜ୍ୟରେ ଜଣେ ସାମାନ୍ୟ ନାଉରୀ ଥରେ President (ସଭାପତି) ହୋଇଥିଲା ; କାରଣ ତାହା ସାଧାରଣତନ୍ତ୍ର ରାଜ୍ୟ । ମୁଁ ମୋର ଅଭିଭାଷଣରେ ଯାହା ଲେଖିଛି, ଅଭ୍ୟର୍ଥନା ସଭାର ସଭାପତି କନିକାରାଜା ସାହେବ ସବୁ ଆଲୋଚନା କରିଅଛନ୍ତି ; ମୋର ଅଭିଭାଷଣ ପୁନରୁକ୍ତି ମାତ୍ର ।—

ଭାଇମାନେ !

୧ । ଉତ୍କଳ ସମ୍ମିଳନୀ ସଭାପତି ପଦରେ ନିଯୁକ୍ତ ସମ୍ବନ୍ଧେ ସମ୍ମିଳନୀ ପକ୍ଷରୁ ଖଣ୍ଡିଏ ଟେଲିଗ୍ରାଫ ପାଇବାର ମୁଁ କେତେକ ଘଣ୍ଟାପୂର୍ବେ ଜ୍ୱରରୋଗରୁ ଉଠି ବସିଥିଲି । ପ୍ରଥମରେ ସେପରି ଟେଲିଗ୍ରାମର ଅର୍ଥ ବୁଝି ପାରିଲି ନାହିଁ । ସମ୍ମିଳନୀର ଆରମ୍ଭଠାରୁ ଗତବର୍ଷ ପର୍ଯ୍ୟନ୍ତ ଯେଉଁ ସିଂହାସନ ରାଜା, ମହାରାଜା ଏବଂ ମହା ମହା ବିଦ୍ୱାନ ସମ୍ଭ୍ରାନ୍ତ ମହାପୁରୁଷମାନଙ୍କ ଦ୍ୱାରା ଶୋଭିତ ହୋଇ ଆସୁଥିଲା ଆଜି ହଠାତ୍ ସର୍ବ ବିଷୟରେ ଶକ୍ତିହୀନ ଜରାଜୀର୍ଣ୍ଣ ରୋଗ ଭୋଗରେ ବିଚଳିତ ମତି ଗୋଟାଏ ଲୋକକୁ ଆହ୍ୱାନ କି ସକାଶେ ? ଟେଲିଗ୍ରାମରେ ମାନନୀୟ ଦାସ ମହାଶୟଙ୍କ ସ୍ୱାକ୍ଷର ଦେଖିଲି, ଅନ୍ୟଥା ମୋତେ କେହି ବିଦ୍ରୂପ କରୁଅଛି ବୋଲି ମନରେ କରିଥାନ୍ତି । ଯାହାହେଉ ମନରେ କଲି ବର୍ତ୍ତମାନ ମୋ ପକ୍ଷରେ କର୍ତ୍ତବ୍ୟ କଣ ? ପରମୁହୂର୍ତ୍ତରେ ଭାବିଲି ଏହି ସମ୍ମିଳନୀ ଉତ୍କଳର ରାଜା, ମହାରାଜା କିମ୍ବା ଶିକ୍ଷିତ ଧନବନ୍ତ ଲୋକମାନଙ୍କର ନୁହେ । ରାଜା ମହାରାଜାଠାରୁ ଦୀନ ଦରିଦ୍ର ପର୍ଯ୍ୟନ୍ତ ସର୍ବଜାତୀୟ ସର୍ବଶ୍ରେଣୀୟ ଲୋକଙ୍କର ମଙ୍ଗଳ କାମନାରେ ଏହା ପ୍ରତିଷ୍ଠିତ । ସୁତରାଂ ଉତ୍କଳବାସୀ ପ୍ରତ୍ୟେକ ଲୋକର ଏଥିରେ ସମାନ ଅଧିକାର ଅଛି । ଏହି କଥା ସମ୍ମିଳନୀ ପକ୍ଷରୁ ବାରମ୍ବାର ବୁଝାଇ ଦିଆଯାଉଅଛି । ମାତ୍ର ବାକ୍ୟଠାରୁ କାର୍ଯ୍ୟର ଦୃଷ୍ଟାନ୍ତ ଅଧିକଫଳ ଦାୟୀ ଅଟେ—ଏହା ପ୍ରମାଣ କରାଇବା ନିମନ୍ତେ ମୁଁ ନିମ୍ନ ଶ୍ରେଣୀରୁ ବାହାର ଆସି ସଭାପତି ଆସନ ଅଧିକାର କରି ବସିବାକୁ ସାହସ କରିଅଛି । ଉତ୍ତର-ଆମେରିକାର ଯୁକ୍ତରାଜ୍ୟରେ ଏକ ସମୟରେ ଜଣେ ନାଉରି ପ୍ରେସିଡେଣ୍ଟ ଅର୍ଥାତ୍ ରାଜକୀୟ ପ୍ରଧାନ ପଦରେ ନିଯୁକ୍ତ ହୋଇଥିଲେ—ଯେହେତୁ ତାହା ସାଧାରଣତନ୍ତ୍ରାଧୀନ ଥିଲା । ଭାଇମାନେ ! ଭାରତଭୂମି ପକ୍ଷରେ ବର୍ତ୍ତମାନ ବିଷମ ଦୁର୍ଦ୍ଦିନ ଉପସ୍ଥିତ । ପ୍ରତ୍ୟକ୍ଷରେ ଭାରତରେ କୌଣସି ଦୁର୍ଯୋଗ ଉପସ୍ଥିତ ନାହିଁ ସତ୍ୟ ମାତ୍ର ଭାରତର ରାଜରାଜେଶ୍ୱର ବର୍ତ୍ତମାନ ଦାରୁଣ ଯୁଦ୍ଧରେ ଲିପ୍ତ । ବିଲାତରେ ଯୁଦ୍ଧକ୍ଷେତ୍ର । ଭାରତବାସୀ ଅନନ୍ୟ ମନରେ ଅନେକ କ୍ଷେତ୍ରରେ ରାଜକୀୟ ବିନା ଆହ୍ୱାନରେ ଧନ, ପ୍ରାଣ ଉତ୍ସର୍ଗ କରୁଅଛନ୍ତି ଏବଂ କରିବାକୁ ପ୍ରସ୍ତୁତ । ପ୍ରତ୍ୟେକ ଭାରତବାସୀ ଯେ ରାଜରାଜେଶ୍ୱରଙ୍କ ମଙ୍ଗଳ କାମନା କରୁଅଛନ୍ତି, ଏହା ନିଃସନ୍ଦେହ ଦୃଢ଼ରୂପେ ବୋଲିବାକୁ ଆମ୍ଭେମାନେ ପ୍ରସ୍ତୁତ । କାରଣ ଆମ୍ଭମାନଙ୍କର ରାଜରାଜେଶ୍ୱର ନିଜର ରାଜ୍ୟ ବା ଧନ ବୃଦ୍ଧି ନିମନ୍ତେ

Digitized by srujanika@gmail.com

ଲୋଭପରବଶ ହୋଇ ଏହି ଯୁଦ୍ଧରେ ପ୍ରବୃତ୍ତ ହୋଇ ନାହାନ୍ତି । ଅକାରଣ ବା ଅନ୍ୟାୟ ରୂପେ ଶତ୍ରୁ ଦ୍ୱାରା ଆକ୍ରାନ୍ତ ନିର୍ଦ୍ଦୋଷ ପ୍ରତିବେଶୀ ବନ୍ଧୁମାନଙ୍କ ରକ୍ଷା ଏବଂ ଜଗତରେ ଶାନ୍ତି ସ୍ଥାପନ ନିମନ୍ତେ ରାଜରାଜେଶ୍ୱର ଏହି ଧର୍ମଯୁଦ୍ଧରେ ପ୍ରବୃତ୍ତ ହୋଇଅଛନ୍ତି । ଏଥିକୁ "ଯତୋଧର୍ମ ସ୍ତତୋଜୟଃ" । ଆମ୍ଭମାନଙ୍କ ପକ୍ଷରେ ଜୟ ନିଶ୍ଚିତ ଏହା ପ୍ରତ୍ୟେକ ଭାରତବାସୀ ଆଶା, କାମନା ଏବଂ ପ୍ରାର୍ଥନା କରୁଅଛନ୍ତି । ରାଜରାଜେଶ୍ୱର ସମରରେ ପ୍ରବୃତ୍ତ ହେବା ଦିନଠାରୁ ଭାରତର ରାଜା, ମହାରାଜାଠାରୁ ଦୀନ ଦୁଃଖୀ ପର୍ଯ୍ୟନ୍ତ ପ୍ରତ୍ୟେକ ଲୋକ ବିବିଧ ପ୍ରକାରେ କଷ୍ଟ ଭୋଗ କରୁଅଛନ୍ତି—ଏହା ପ୍ରତ୍ୟକ୍ଷ ବିଷୟ ଅଟେ । ରାଜା ପ୍ରଜା ମଧ୍ୟରେ ନିତ୍ୟ ସମ୍ବନ୍ଧ । ପ୍ରଜା ଚେର ଏବଂ ରାଜା ବୃକ୍ଷ ସ୍ୱରୂପ ଅଟନ୍ତି । ଝଞ୍ଜା ବାୟୁରେ ବୃକ୍ଷ ଆନ୍ଦୋଳିତ ହେଲେ ଚେର କମ୍ପିତ ବ୍ୟସ୍ତ ଏବଂ ଇତସ୍ତତଃ ହୋଇଯାଏ । ଦୟାମୟ ପ୍ରଭୁ ଏହି ମାରାତ୍ମକ ସମର ଶେଷ ଏବଂ ଜଗତରେ ଶାନ୍ତି ସ୍ଥାପନ କରନ୍ତୁ ।

## ଦେଶ ମିଶ୍ରଣ ।

୧ । ଭାଇମାନେ ! ଆମ୍ଭେମାନେ ମାତୃଭୂମିର ମଙ୍ଗଳ ଏବଂ ଉନ୍ନତିକାମନାରେ ଏକତ୍ରିତ ହୋଇଅଛୁଁ । ଉପସ୍ଥିତ ଦୁଃଖ ସୁଖ ବିଷୟରେ ବନ୍ଧୁମାନଙ୍କ ସହିତ ଆଲୋଚନା କରିବାର ମାନବଜାତିର ଧର୍ମ ଅଟେ । ଏହି ଆଲୋଚନା ଯୋଗେ ଦେଶର ଦୁର୍ଗତି ମୋଚନ ଏବଂ ମଙ୍ଗଳସାଧନର ଉପାୟ ଆବିଷ୍କୃତ ହୋଇଥାଏ, ସମ୍ପ୍ରତି ଆମ୍ଭମାନଙ୍କର କିଣ ଆଲୋଚ୍ୟ ବିଷୟ ହୋଇପାରେ ? ଯେପରି ସ୍ୱର୍ଗରୁ ଗୋଟିଏ ଦେବତା, ହାତରେ ଦୁଇଗୋଟି ବର ସ୍ୱରୂପ ଫଳ ଧରି ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥିତ ହେବେ, ତାହାଙ୍କର ଗୋଟିଏ ହସ୍ତରେ ଉତ୍କଳର ଦେଶମିଶ୍ରଣ ଏବଂ ଅନ୍ୟ ଗୋଟିଏ ହସ୍ତରେ ସ୍ୱର୍ଗୀୟ ସୁଖମୟ ଫଳ ଥିବ— ଦେବତା ପଚାରିବେ "ତୁମ୍ଭମାନଙ୍କର କେଉଁ ଫଳ ଲୋଡ଼ା ? " ଅବଶ୍ୟ ଓଡ଼ିଶାବାସୀ ପ୍ରତ୍ୟେକ ଲୋକ ଦେଶମିଶ୍ରଣ ଫଳ ନିମିତ୍ତ ହାତ ବଢ଼ାଇବେ । ସେଥିରେ କିଛି ସନ୍ଦେହ ନାହିଁ । ଯେହେତୁ ମାନବଜାତିର ସ୍ୱାଭାବିକ ଧର୍ମ ଅଗ୍ରେ କଷ୍ଟରୁ ବିମୁକ୍ତି, ତହିଁ ଉତ୍ତାରେ ସୁଖଭୋଗ କରିବାକୁ ଇଚ୍ଛା କରେ । ଯେହେତୁ ରାଜକୀୟ ଶାସନସମ୍ପର୍କେ ଉତ୍କଳଭୂମି ଛିନ୍ନ ବିଚ୍ଛିନ୍ନ ଅବସ୍ଥାରେ ଥିବାରୁ ତତ୍ଫଳଜନିତ ଯନ୍ତ୍ରଣା ଉତ୍କଳବାସୀ ଭୋଗ କରୁଅଛନ୍ତି ସେଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଶିକ୍ଷା-ଜ୍ଞାନ-ସଭ୍ୟତା ଓ ମାତୃଭାଷାର ଗୌରବ ପ୍ରସାରଣ ବିଶେଷ ରୂପେ ବାଣିଜ୍ୟ ବିସ୍ତାର କୌଣସି ବିଷୟରେ ଉନ୍ନତିଲାଭ କରିପାରୁ ନାହାନ୍ତି । ଉତ୍କଳଭୂମି ଶାସନ ସମ୍ବନ୍ଧେ ପାର୍ଥକ୍ୟ ହେତୁ କି ଭାବରେ ଉନ୍ନତିର ଅନ୍ତରାୟ ଘଟୁଅଛି ତାହା ବିଶଦରୂପେ ବୁଝାଇବାକୁ ଗଲେ ବହୁ ସମୟ ଆବଶ୍ୟକ, ଅନେକ ଶ୍ରୋତାଙ୍କର ଧୈର୍ଯ୍ୟଚ୍ୟୁତ ହେବାର ସମ୍ଭାବନା । ପ୍ରତ୍ୟେକ ଶିକ୍ଷିତ ଲୋକ କାରଣ ଜାଣି ପ୍ରାଣରେ କଷ୍ଟ ଅନୁଭବ କରୁଅଛନ୍ତି । ଉତ୍କଳରେ ଯେଉଁ ସମସ୍ତ ବିଷୟର ଉନ୍ନତିର ଅନ୍ତରାୟ ବିଷୟ ଉଲ୍ଲେଖ କଲି ମାନବ ଜାତିର ସୁଖ ସ୍ୱାଚ୍ଛନ୍ଦ୍ୟ ବଢ଼ିବା ନିମନ୍ତେ

Digitized by srujanika@gmail.com

ପ୍ରତ୍ୟେକ ବିଷୟ ଆବଶ୍ୟକ ଅଟେ । ଯେପରି ଗୋଟିଏ ବୃହତ୍ ତେଜସ୍ୱୀ ବୃକ୍ଷର ଅଗ୍ରସ୍ଥରେ ଗୋଟିଏ ସାନଗଛ ଥିଲେ କ୍ରମଶଃ ଉନ୍ନତି ଲାଭ ନ କରି ସଙ୍କୋଚିତ ହୋଇପଡ଼େ, ସେହିପରି ଉତ୍କଳଖଣ୍ଡମାନ ଅନ୍ୟ ଶାସନାଧୀନରେ ଥିବାରୁ କ୍ରମଶଃ ଦୁର୍ବଳରୁ ଦୁର୍ବଳତର ହୋଇ ପଡ଼ୁଅଛି । ଶାସ୍ତ୍ରରେ ଉନ୍ନତି ସମ୍ବନ୍ଧେ ମଧ୍ୟ ଉତ୍କଳ ଜାତି କ୍ଷୀଣରୁ କ୍ଷୀଣତର ହୋଇ ପଡ଼ୁଅଛନ୍ତି । ବିଲାତସ୍ଥ ସୁବିଖ୍ୟାତ ଚିକିତ୍ସକମାନେ ନାନାପ୍ରକାର ଯୁକ୍ତି ଦେଖାଇ ସ୍ଥିର କରିଛନ୍ତି ଯେ ଯୌନ ନିର୍ବାଚନ ସମାଜ ଅପ୍ରଶସ୍ତ ଥିଲେ ମାନବଜାତିର ଭବିଷ୍ୟତ ବଂଶଧରମାନେ କ୍ଷୀଣତର ହୋଇ ପଡ଼ନ୍ତି । ଉତ୍କଳର ଗୋଦାବରୀଠାରୁ କଂସାବତୀ କୂଳ ପର୍ଯ୍ୟନ୍ତ ଉତ୍କଳୀୟ ବ୍ରାହ୍ମଣ, କରଣ ଓ ଖଣ୍ଡାଏତ ପ୍ରଭୃତି ବିବିଧ ଜାତୀୟ ସମାଜର ବାସ । କିନ୍ତୁ ଉତ୍କଳ ଭିନ୍ନ ଭିନ୍ନ ଶାସନରେ ଥିବାରୁ ସେହିସବୁ ସମାଜ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ଯାଇଅଛି । ଗଞ୍ଜାମୀ କରଣ, କଟକୀ କରଣ ବା ସମ୍ବଲପୁରୀ କରଣ ଏକଜାତୀୟ ହେଲେ ମଧ୍ୟ ବୈବାହିକ ଆଦାନ ପ୍ରଦାନ ପରସ୍ପର ହିତହେତୁ ଅତି ସଙ୍କୀର୍ଣ୍ଣ ସୀମାମଧ୍ୟରେ ବୈବାହିକ ଆଦାନ ପ୍ରଦାନ କ୍ଷେତ୍ର ଅପ୍ରଶସ୍ତ ହୋଇ ପଡ଼ିଅଛି । ଉତ୍କଳବାସୀ ସମସ୍ତ କରଣ ଏକତ୍ରିତ ହେଲେ ଗୋଟିଏ ଗୋଟିଏ ଶକ୍ତିଶାଳୀ ଜାତି ହୋଇ ପାରନ୍ତେ । ଏହିପରି ଅବସ୍ଥା ପ୍ରତ୍ୟେକ ଜାତିର ଅଟେ ।

ଭାଇମାନେ ! ଯେପର୍ଯ୍ୟନ୍ତ ସମସ୍ତ ଉତ୍କଳ ଏକତ୍ରିତ ହୋଇ ନାହିଁ, ଏହାର ଉନ୍ନତିର ପ୍ରତ୍ୟାଶା ବିଡ଼ମ୍ବନା ମାତ୍ର—ଏହା ଆପଣମାନେ ଜାଣି ପାରୁଅଛନ୍ତି । ସମ୍ମିଳନୀ ଆରମ୍ଭଠାରୁ ଏପର୍ଯ୍ୟନ୍ତ ମନୋଦୁଃଖ ସହିତ ଏହି ବିଷୟ ଆଲୋଚନା କରି ଆସୁଅଛନ୍ତି ଏବଂ କୃତକାର୍ଯ୍ୟ ହେବା ପର୍ଯ୍ୟନ୍ତ ଚେଷ୍ଟା କରୁଥିବେ ଏହା ନିଶ୍ଚୟ ଅଟେ । ଆମ୍ଭେମାନେ ରାଜସରକାରଙ୍କୁ ପୁନଃ ପୁନଃ ଆବେଦନ କରି ଅକୃତକାର୍ଯ୍ୟ ହେଉଅଛୁଁ ସତ୍ୟ କିନ୍ତୁ ନିବୃତ୍ତ ହେବୁଁନାହିଁ । କୋଟିସଂଖ୍ୟକ ଦୁର୍ବଳ ଉତ୍କଳସନ୍ତାନର ଆକୁଳ ରବ କେତେବେଳେ ହେଲେ ନିଶ୍ଚୟରେ ରାଜାଧିରାଜଙ୍କର କର୍ଣ୍ଣଗୋଚର ହେବ ।

ବସ୍ତ୍ର ।

୩ । ଆମ୍ଭମାନଙ୍କର ସାଂସାରିକ ବ୍ୟବହାର ନିମନ୍ତେ ଯେଉଁ ସବୁ ପଦାର୍ଥ ପ୍ରୟୋଜନ, ସେଥିମଧ୍ୟରେ ଅନ୍ନ, ବସ୍ତ୍ର ଓ ଲବଣ ଏହି ତିନୋଟି ପ୍ରଧାନ । ଅନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଅଭାବ କିମ୍ବା ଦୁର୍ମୂଲ୍ୟତା ହେତୁ କୌଣସି ପ୍ରକାର ହେଲେ ସଂସାର ଚଳାଇପାରେ କିନ୍ତୁ ଏ ତିନିରୁ ଗୋଟିଏ ଅଭାବ ହେଲେ ଆମ୍ଭମାନଙ୍କର ସଂସାର ଯାତ୍ରା ନିର୍ବାହ ନିତାନ୍ତ ଦୁର୍ଘଟ ହୋଇପଡ଼େ । ବିଲାତରେ ମାରାତ୍ମକ ସମର ହେତୁ ବସ୍ତ୍ର ଓ ଲବଣ ଦୁଇଗୋଟି ପଦାର୍ଥ ନିତାନ୍ତ ଦୁର୍ମୂଲ୍ୟ ହୋଇ ପଡ଼ିଅଛି । ବସ୍ତ୍ରର ଦୁର୍ମୂଲ୍ୟତା ହେତୁ କି ନିମ୍ନଶ୍ରେଣୀ, କି ମଧ୍ୟବିତ୍ତଶ୍ରେଣୀ ଏମାନେ ଦାରୁଣ କଷ୍ଟ ଅନୁଭବ କରୁଅଛନ୍ତି । ବିଲାତ ବସ୍ତ୍ରର ଅବସ୍ଥା ଯେ ପ୍ରକାର ଦେଖାଯାଉଅଛି, ତାହା ଏ ଉତ୍ତାରେ ନିତାନ୍ତ ଦୁଷ୍ପ୍ରାପ୍ୟ ହୋଇପଡ଼ିବ । ସୁତରାଂ ଲୋକସାଧାରଣ ଯେ କି



Digitized by srujanika@gmail.com

ବିଷୟ ଅନୁଭବ କରିବେ ତାହା ସହଜରେ ଅନୁମିତ ହୋଇପାରେ । ବିଲାତି ବସ୍ତ୍ରର ସୂକ୍ଷ୍ମତା ଏବଂ ସୁଲଭତା ହେତୁ ଦେଶୀୟ ବସ୍ତ୍ର ଉତ୍ପନ୍ନ ଏକପ୍ରକାର ବିଲୁପ୍ତ ହୋଇଗଲାଣି । ଯାହାହେଉ ଦେଶୀୟ ବସ୍ତ୍ରର ଉତ୍ପନ୍ନ ସମ୍ବନ୍ଧେ ବର୍ତ୍ତମାନ ଅମ୍ଭେମାନେ ଜାଗ୍ରତ ନ ହେଲେ ଅମ୍ଭମାନଙ୍କର ଦୁର୍ଦ୍ଦଶାର ସୀମା ରହିବନାହିଁ । ଦଶବର୍ଷ ପୂର୍ବେ ଅମ୍ଭମାନଙ୍କର ଏହି ସମ୍ମିଳନୀ ଭବିଷ୍ୟତ୍ ନେତ୍ରରେ ଦେଶୀୟ ବସ୍ତ୍ରର ଆବଶ୍ୟକତା ବୁଝିଥିଲେ । ସମ୍ମିଳନୀର Managing Committee ସ୍ଥିର କରିଥିଲେ ଯେ ଅନ୍ତତଃ ଅମ୍ଭେମାନେ ପ୍ରତ୍ୟେକେ ଦେଶୀୟ 'ପଞ୍ଚାଳକଣ୍ଟ' ପିନ୍ଧିବୁ । ଅମ୍ଭମାନଙ୍କର ମାନନୀୟ ମଧୁସୂଦନ ଦାସ ମହୋଦୟ ଠକଠକ ଓ ତନ୍ତ ପ୍ରଚଳନ ଏବଂ ଅନେକ ତନ୍ତୀଙ୍କୁ ଶିକ୍ଷିତ କରାଇ ଅନେକ 'ପଞ୍ଚାଳକଣ୍ଟ' ପ୍ରସ୍ତୁତ କରାଇଥିଲେ । ମାତ୍ର ଅମ୍ଭେମାନେ ବିଦେଶୀ ଲୁଗାର ଚାକଚକ୍ୟରେ ଭୁଲିଯାଇଅଛୁଁ । ପୁଣି ତଥାକଥିତ ସଭ୍ୟତା ବୃଦ୍ଧି ସହିତ ଅମ୍ଭମାନଙ୍କର ବିଳାସିତା ବଢିଯାଇଅଛି । ଅମ୍ଭମାନଙ୍କର ବର୍ତ୍ତମାନ ଅସ୍ଥିର ସଙ୍କୀର୍ଣ୍ଣତାବସ୍ଥା ବିଷୟ ନ ଭାବି ନୂଆ ନୂଆ ଫେସନର ନାନାପ୍ରକାର ଲୁଗା ପ୍ରସ୍ତୁତ କରି ଦୁର୍ଦ୍ଦଶା ମାର୍ଗରେ ଅଗ୍ରସର ହେଉଅଛୁଁ । ବର୍ତ୍ତମାନ ଅମ୍ଭମାନଙ୍କୁ ଦେଶୀ ମୋଟାଲୁଗା ରୁଚିବ କିପରି ? ମାନନୀୟ ମଧୁସୂଦନ ବାବୁ ବିବିଧପ୍ରକାର ବାହୁଲ୍ୟ କର୍ମକ୍ଷେତ୍ରରେ ବୁଡ଼ି ରହି ମଧ୍ୟ ଦେଶର ମଙ୍ଗଳସାଧନ ନିମନ୍ତେ ବୃଦ୍ଧାବସ୍ଥାରେ ମଧ୍ୟ ଦେଶୀୟ ବସ୍ତ୍ରର ପ୍ରଚଳନ ସମ୍ବନ୍ଧେ ଆପଣାର ମୂଲ୍ୟବାନ୍ ସମୟ ନଷ୍ଟ କରି ଯେପରି ଲାଗିଯାଇଥିଲେ, ଦେଶର ଅନ୍ୟ କ୍ଷମତାଶାଳୀ ଲୋକସାଧାରଣ ସେହିପରି ଲାଗିଯାଇଥିଲେ ଆଜ ଅମ୍ଭମାନଙ୍କୁ ବସ୍ତ୍ର ସମ୍ବନ୍ଧେ ଭାବିବାକୁ ହୋଇ ନ ଥାନ୍ତା । ଦେଶୀୟ ବସ୍ତ୍ର ଯେପରି ସୁଲଭ ସେହିପରି ଦୀର୍ଘସ୍ଥାୟୀ ଅଟେ, ସେହି ବସ୍ତ୍ରର ବ୍ୟବହାର ଯୋଗୁଁ ଅମ୍ଭମାନଙ୍କର ସଙ୍କୀର୍ଣ୍ଣ ଆୟରୁ ଗୋଟିଏ ବିଶେଷ ବ୍ୟୟ କେତେକ ସଙ୍କୋଚ ହୋଇ ପଡ଼ନ୍ତା । ସେ ବିଷୟ ଭାବିବାପାଇଁ କିଛିମାତ୍ର ଚେଷ୍ଟା କରିନାହୁଁ । ସେଥିର କର୍ମଫଳ ବର୍ତ୍ତମାନ ଭୋଗ କରୁଅଛୁଁ ଏବଂ କରିବାକୁ ହେବ ।

ଅମ୍ଭମାନଙ୍କର ନିଜ ନିଜ ବିଷୟ ଛାଡ଼ି ଦେଶବିଷୟ ମଧ୍ୟ ଚିନ୍ତା କରିବା ଉଚିତ । ଅମ୍ଭେମାନେ ଦେଶପ୍ରତି ଦୃଷ୍ଟି ନିକ୍ଷେପ କଲେ ଦେଖିବାକୁ ପାଉଁ ଯେ ଏହି ଦେଶରୁ ତୁଳା ଏବଂ ଝୋଟ ଯାଇ ବିଲାତରୁ ଲୁଗା ପ୍ରସ୍ତୁତ ହୋଇ ଆସୁଅଛି । ଅମ୍ଭେମାନେ ତୁଳା ବିକି ବିଲାତିଲୁଗା ପିନ୍ଧୁଅଛୁଁ । ଏହି ସୂତ୍ରେ ଜାହାଜ ଅଧିକାରୀ ବିଦେଶୀ ତନ୍ତ୍ର କୋମ୍ପାନୀ ମହାଜନମାନଙ୍କୁ ଅମ୍ଭେମାନେ ପ୍ରତିବର୍ଷ କେତେ କୋଟି କୋଟି ଟଙ୍କା ଦେଉଅଛୁଁ । ପୁଣି ଦେଶର ସହସ୍ର ସହସ୍ର ତନ୍ତୁଜୀବିଶ୍ରେଣୀ ଲୋକମାନଙ୍କର ବଂଶ ଉଚ୍ଛନ୍ନ ହୋଇଗଲାଣି । ଏହା ମୋର କଳ୍ପନାର ବିଷୟ ନୁହେଁ, ଅନୁଭବ ବିଷୟ ଅଟେ । ମୋ ଘର ସମୀପରେ ମାଳିପୁର ନାମରେ ଗୋଟିଏ ଗ୍ରାମ ଅଛି । ମୁଁ ବାଲ୍ୟକାଳରେ ଦେଖିଥିଲି ସେଠାରେ ପ୍ରାୟ ଶତାବଧି ତନ୍ତୀଘର ଥିଲା ସେମାନଙ୍କ ଘରର ସ୍ତ୍ରୀଲୋକମାନେ ସୁନା ରୁପା ଅଳଙ୍କାରରେ ଭୂଷିତ ଥିଲେ । ଗ୍ରାମରେ ଅନେକ ତନ୍ତ୍ର ମହାଜନ ମଧ୍ୟ ଥିଲେ । ବର୍ତ୍ତମାନ ସେହି ଗ୍ରାମ କ୍ରମଶଃ ପଡ଼ିଆ ପଡ଼ିଲାଣି ।

Digitized by srujanika@gmail.com

ଯେଉଁ ୧୦ । ୨୦ ଘର ତନ୍ତି ଅଛନ୍ତି ସେମାନଙ୍କ ଘରର ଛଳରେ ଛୁଣ୍ଠା ନାହିଁ ଏବଂ ଘର ଭଙ୍ଗା, ସମସ୍ତେ ପ୍ରାୟ ଭିକାରୀ, ଯେହେତୁ ତନ୍ତିଜାତ ଜୋଡ଼ଧରି କାମ କରିବାକୁ ଅକ୍ଷମ ଏବଂ କୁସଂସ୍କାର ହେତୁ ମଧ ହଳ ଧରିଲେ ସେମାନଙ୍କର ଜାତି ଯାଏ । ମୁଁ ଯେଉଁ ତନ୍ତିଗ୍ରାମ କଥା କ[illegible] ସେମାନେ 'ପୋଷାକୀ' ଲୁଗା ବୁଣା ତନ୍ତି ଅଟନ୍ତି । ବଙ୍ଗଦେଶ, ସିମଲା, ଶାନ୍ତିପୁର ଲୁଗାଠାରୁ ମଧ ଦଶ ପନ୍ଦର ଟଙ୍କା ମୂଲ୍ୟର ଯୋଡ଼ା ଲୁଗା ବୁଣା କେତେ ଘର ତନ୍ତି ବୁଣୁଥିଲେ ।

ଗତବର୍ଷ ପୂର୍ବେ ସେହିପରି ଉତ୍କୃଷ୍ଟ ଲୁଗାବୁଣା ଗୋଟିଏ ତନ୍ତି ସଙ୍ଗରେ ବାଟରେ ଦେଖା ହୋଇଥିଲା । ତାହା କାଖରେ ଯୋଡ଼ାଏ ଲୁଗା ବନ୍ଧାଥିଲା । ସେ ଦୁଃଖିତ ହୋଇ କହିଲା "ବାବୁ, ଏହି ମୋର ଶେଷ ଲୁଗା ବୁଣା ; ଏ ଗ୍ରାମରେ ଏ ଲୁଗା ବୁଣିବା ଭଳି ପାନଅ ତିଆରି କରିବାପାଇଁ କାରିଗର ମଧ ନାହାନ୍ତି ।" ଭାଇମାନେ ! ଲୁଗାକିଣା ହଇରଣରୁ ରକ୍ଷା ପାଇବା ଓ ଅମ୍ଭମାନଙ୍କ ସମାଜରୁ ତଥାକଥିତ ନିମ୍ନଶ୍ରେଣୀ ଅତି ପ୍ରୟୋଜନୀୟ ତନ୍ତିବଂଶକୁ ରକ୍ଷା କରିବା ଏବଂ ଲୁଗାକିଣା ସୂତ୍ରରେ ଦେଶର ବିପୁଳ ସମ୍ପତ୍ତି ଦେଶରୁ ବାହାର କରି ନ ଦେବା ଅମ୍ଭମାନଙ୍କ ପକ୍ଷରେ ଉଚିତ କି ନାହିଁ ଥରେ ଚିନ୍ତା କରିବା ନିମନ୍ତେ ସମ୍ମିଳନୀର ପ୍ରଥମ ପ୍ରସ୍ତାବ ଅନୁସାରେ ଅମ୍ଭମାନଙ୍କର ଅତି ନିଲୁଛରେ 'ପଖାଳିକଳ' ଶିଖିବାର ଉଚିତ କି ନାହିଁ, ଅଏରମାନ ବିଚାର କରି ଦେଖନ୍ତୁ । ଅମ୍ଭେମାନେ ଆଶାକରୁଁ କେହି କେହି ମହାତ୍ମା ଲୋକ ସମ୍ମିଳନୀରୁ 'ସ୍ୱହଲୁ' ବାହୁଡ଼ି ଯାଇ କେବଳ ନିଜେ 'ପଖାଳକଳ' ପଢ଼ିବେ ତାହା ନୁହେ, ଗ୍ରାମସ୍ଥ ଲୋକମାନଙ୍କୁ 'ପଖାଳକଳ' ଚିହ୍ନାଇବାର ଉପକାରିତା ବୁଝାଇ ଦେବେ । ଦେଶୀୟ ଲୁଗା ବ୍ୟବହାର କରିବାକୁ ଗଲେ ପୂର୍ବେ ଯେପରି ପ୍ରତ୍ୟେକ କୃଷକର ତୁଳା ଚାଷ ଥିଲା ସେହିପରି ପୁନର୍ବାର କପା ଫସଲ ତିଆରି କରିବାକୁ ଚେଷ୍ଟା କରିବେ । ଅଭ୍ରକପକ୍ଷରେ ଅମ୍ଭେମାନେ ଦେଖିଅଛୁଁ ବାଟ ପାଖରେ ଲୋକଙ୍କ ବାଡ଼ିରେ ଏକପ୍ରକାର ବଡ଼ ବଡ଼ କପାଗଛ ହୁଏ । ୫ । ୬ ବର୍ଷ ପର୍ଯ୍ୟନ୍ତ ବିନା ଯତ୍ନରେ ପ୍ରତ୍ୟେକ ଗଛରୁ ଦୁଇସେର ପର୍ଯ୍ୟନ୍ତ ତୁଳା ଅଦାୟ ହୁଏ । ସେପରି କପାଗଛ ୨୦।୩୦ ଟା ବାଡ଼ିରେ ଲଗାଇଦେଲେ ବର୍ଷରେ ମହଣେ ତୁଳା ପାଇପାରିବେ ।

## ଲବଣ ।

ଅମ୍ଭମାନଙ୍କର ନିତ୍ୟ ବ୍ୟବହାର୍ଯ୍ୟ ଅନ୍ୟତମ ଶ୍ରେଷ୍ଠ ବସ୍ତୁ ଲବଣ ଅଟେ । ଉତ୍କଳରୁ ଲବଣପୋକ୍ତାନ ଉଠିଯିବାରୁ ବିଦେଶୀୟ ଲବଣ ଅମ୍ଭମାନଙ୍କର ଅବଲମ୍ବନ ଥିଲା । ସମରହେତୁ ତାହାର ଆମଦାନି ବନ୍ଦ ହୋଇଯାଇଅଛି । କେବେ ପୁଣି ଆସିବ ତାହାର ସ୍ଥିରତା ନାହିଁ । ଉତ୍କଳର ଅଭ୍ୟନ୍ତରୀଣ ଅବସ୍ଥା ମୁଁ କିଛି ଜାଣେ । ଅନେକ ଦରିଦ୍ର ଲୋକଙ୍କର ଆହାର ସମ୍ବନ୍ଧରେ ଲବଣ ମାନ—ତରକାରୀର ସହିତ କଦାଚିତ୍ ଭେଟ ହୁଏ । ତୁଳନାରେ ବଙ୍ଗଦେଶଠାରୁ ଲବଣର ଦର କିଛି ସୁଲଭ ଅର୍ଥାତ୍ ସେରକୁ ଛଅପଇସା ମୂଲ୍ୟ । କିନ୍ତୁ ଦରିଦ୍ର ଉତ୍କଳପକ୍ଷରେ ଏହା ନିତାନ୍ତ

Digitized by srujanika@gmail.com

ଅଙ୍ଗୀକୃତ ଅଛେ । ପୂର୍ବେ ବାଲେଶ୍ୱରରେ ଲବଣ ପୋକ୍ତାନ ହେଉଥିଲା । ଓଡ଼ିଶାର ଖର୍ଚ୍ଚ ବାଦ୍ ପ୍ରାୟ ଅଠଲକ୍ଷ ମହଣ ଲୁଣ ବଙ୍ଗଦେଶରେ ବ୍ୟବହାରପାଇଁ କଲିକତା ଯାଉଥିଲା । ପ୍ରାୟ ୭୦।୮୦ ବର୍ଷ ହେଲା ପୋକ୍ତାନ ଉଠି ଯାଇଅଛି । ଏହି ଲୁଣ ଉଠିଯିବା ସହିତ ବାଲେଶ୍ୱରର ସେହିପରି ଲକ୍ଷ୍ମୀ ଚାଲିଯାଇଅଛନ୍ତି । ବଙ୍ଗଦେଶକୁ ଲୁଣ ବହି ନେବାଯିବା ନିମନ୍ତେ ପ୍ରାୟ ଶହେଶତ ଜାହାଜ ନିଯୁକ୍ତ ଥିଲା । ମୁଁ ନିଜେ ଦେଖିଅଛି ତିନି ଚାରି ହଜାରଟଙ୍କା ମୂଲ୍ୟରେ ଜାହାଜସବୁ ଦୁଇ ତିନିଶତଟଙ୍କାରେ ଜାଳେଣି କାଠରୂପେ ବିକ୍ରୀତ ହୋଇଅଛି ଏବଂ ଅନ୍ୟ ବାଣିଜ୍ୟ ଚଳାଇବା ନିମନ୍ତେ ମହାଜନମାନଙ୍କ ହାତରେ ଯଥେଷ୍ଟ ଅର୍ଥ ନ ଥିବାରୁ ସମୁଦ୍ରଗାମୀ ଜାହାଜ ସମସ୍ତ ନଷ୍ଟହେବାରୁ ବାଲେଶ୍ୱରର ମହାଜନମାନେ ଉଚ୍ଛନ୍ନ ଯାଇଅଛନ୍ତି । ସେମାନଙ୍କର ବଡ଼ ବଡ଼ କୋଠାଘରର କାନ୍ଥଡ଼ାସବୁ ପୂର୍ବଗୌରବର ପରିଚୟ ଦେବା ନିମନ୍ତେ ଦଣ୍ଡାୟମାନ ରହିଅଛନ୍ତି । ପୁଣି ଏହି ଲୁଣପୋକ୍ତାନରେ ସହସ୍ର ସହସ୍ର ମଳଙ୍ଗି ଅର୍ଥାତ୍ ଲୁଣ ମାରିବା ଲୋକ ଥିଲେ । ପୁଣି ଜାହାଜ ଭଣ୍ଡାରି ଓ ମରମତି ନିମନ୍ତେ ବଢ଼େଇ, କମାର ସହସ୍ରାବଧି ନିଯୁକ୍ତ ଥିଲେ । ମଫସଲର ଚୌକିପାଇକଠାରୁ ସଦରର ଦାରୋଗା ଦେବାନ ଓ ଏସିଷ୍ଟେଣ୍ଟ ସଲ୍ଟ ଏଜେଣ୍ଟ ପର୍ଯ୍ୟନ୍ତ ଶତ ଶତ ଅମଲା ନିଯୁକ୍ତ ଥିଲେ । ପୁରୁଷାନୁକ୍ରମେ ଏହି କାର୍ଯ୍ୟ କରି ଆସୁଥିବା ସୁତରାଂ ଅନ୍ୟ କିଛି କାର୍ଯ୍ୟ ନ ଜାଣିଥିବାହେତୁ ଅଧିକାଂଶ ଲୋକର ବଂଶ ବିଲୁପ୍ତ ହୋଇଅଛି । ଗବର୍ଣ୍ଣମେଣ୍ଟ ଅନୁଗ୍ରହ କରି ଦେଶର ବ୍ୟବହାର ନିମନ୍ତେ ଲୁଣପୋକ୍ତାନ ନିମନ୍ତେ ଅନୁମତି ଦେଲେ କେବଳ ଯେ ପ୍ରଜାମାନେ ରକ୍ଷା ପାଇଯାନ୍ତେ ତାହା ନୁହେଁ, ଗବର୍ଣ୍ଣମେଣ୍ଟଙ୍କର ମଧ୍ୟ ଏଥିରେ ବିଶେଷ ଲାଭ ହୁଅନ୍ତା । ଅବଶ୍ୟ ମୋତେ ଅନ୍ୟ ଦେଶର ଲୁଣ ଆମଦାନି ବିଷୟ ଜଣାନାହିଁ । ମାତ୍ର ବାଲେଶ୍ୱରର ପୂର୍ବାଞ୍ଚଳ ସମୁଦ୍ର ଉପକୂଳବର୍ତ୍ତୀ ଲବଣ ଉତ୍ପନ୍ନ ସ୍ଥାନମାନଙ୍କର ଅବସ୍ଥା ମୋତେ ଜଣାଅଛି । ଲବଣ ପୋକ୍ତାନ କରିବା ଅତି ଗୁରୁତର ବିଷୟ ନୁହେ । ସେଥିପାଇଁ ମୂଳଧନ ମଧ୍ୟ ବିଶେଷ ଲୋଡ଼ା ନାହିଁ । ପ୍ରଜାମାନେ ଲୁଣ ଉତ୍ପନ୍ନ କରି ଖାଆନ୍ତୁ, ଏହି ଉଦ୍ଦେଶ୍ୟରେ ଦୟାମୟ ପରମେଶ୍ୱର ଯେମନ୍ତ ଲୁଣ ପ୍ରାପ୍ତ ହେବାର ସହଜ ଉପାୟ କରି ଦେଇଅଛନ୍ତି, ସମୁଦ୍ରୋପକୂଳ ସ୍ଥାନମାନଙ୍କରେ ସ୍ଥାନେ ସ୍ଥାନେ ଅନେକ ନୁଆଁଣ ଭୂମି ଅଛି । ଦ୍ୱାଦଶୀ ତିଥିଠାରୁ ପଞ୍ଚମୀ ତିଥିପର୍ଯ୍ୟନ୍ତ ସେହିସବୁ ଖାଲରେ ଉଠିଆ ଜୁଆରର ପାଣି ପ୍ରବେଶ କରେ । ପଞ୍ଚମୀଠାରୁ ଦ୍ୱାଦଶୀପର୍ଯ୍ୟନ୍ତ ସେହିସବୁ ଜଳ ଅର୍ଥାତ୍ ନିମ୍ନଭୂମି ଶୁଷ୍କ ଅବସ୍ଥାରେ ପଡ଼ିଥାଏ । ସେହି ସମୟରେ ଉକ୍ତ ଭୂମିରୁ ୨।୩ ଅଙ୍ଗୁଳି ବହଳରେ ମାଟି ଚାଞ୍ଛିଆଣି ଛୋଟଏ ହାଣ୍ଡିରେ ପାଣି ଓ ମାଟି ଗୋଳାଇ ରଖିଲେ ମାଟିସବୁ ତଳକୁ ବସିଯାଏ, ନିର୍ମଳ ପାଣି ଉପରେ ରହେ । ସେହି ପାଣି ଚୁଲିରେ ବସାଇ ଜାଳ ଦେଲେ ଲୁଣ ବସିଯାଏ । ସେହି ଲୁଣ ଅତି ଶୁକ୍ଳ ଏବଂ ତାହାକୁ 'ପଙ୍ଗାଲୁଣ' କହନ୍ତି । ସେହି ଲୁଣ ମାରିବା ନିମନ୍ତେ କାଠଜାଳ ପ୍ରୟୋଜନ ନାହିଁ । ସେହି ନିମ୍ନ ଭୂମିର ଚତୁର୍ଦ୍ଦିଗରେ ତିନି ଚାରିହାତ ଲମ୍ବ ଏକପ୍ରକାର ଘାସ

Digitized by srujanika@gmail.com

ଜାତ ହୁଏ । ଲୁଣ ମାରିବା ସକାଶ ନିଷ୍ଠୁର ଶାସନଜାଲ ପ୍ରୟୋଜନ ହୁଏ । ସେହି ଘାସ ବିନା ଅନ୍ୟ ତୃଣ ବା ବୃକ୍ଷ ଜାତ ହୁଏ ନାହିଁ । ଗବର୍ଣ୍ଣମେଣ୍ଟ ଲୁଣ ପ୍ରସ୍ତୁତ ଉଦ୍ଦେଶ୍ୟରେ ଯେମନ୍ତ ସେ ଭୂମି ସୃଷ୍ଟି କରିଅଛନ୍ତି । ଲୁଣ ପୋକ୍ତାନ ଉଠିଯିବାରୁ ସେସବୁ ପୋକ୍ତାନ ଅର୍ଥାତ୍ ଉତ୍ତମ ଜାଗିର ଦରିଦ୍ର ପ୍ରଜା ତାହା ପରିବାର ପଛଅଡ଼ୁ ମାଟିମେଞ୍ଚାଏ ଲୁଣିଆଣି ଖାଇଦେବ, ତାହା ନିବାରଣ ନିମନ୍ତେ ସରକାର ବାହାଦୁର ପୋଲିସ ପ୍ରହରୀ ନିଯୁକ୍ତ କରିଅଛନ୍ତି । ସମୁଦ୍ର ଉପକୂଳବାସୀ ପ୍ରଜାମାନେ ନିତାନ୍ତ ଦରିଦ୍ର । ସତସତରେ ସେମାନଙ୍କ ହାତରେ ପଇସା ଥାଏ ନାହିଁ । ପୁଣି ସେମାନଙ୍କର ଘରଠାରୁ ଲୁଣ ଦୋକାନ ବା ହାଟ ଦୁଇ ତିନି କୋଶ ଦୂର । ବର୍ଷାକାଳରେ ଘରୁ ବାହାରି ଦୋକାନକୁ ଯିବା ତଳହସ୍ତ ପ୍ରଜାମାନଙ୍କ ପକ୍ଷରେ କି କଷ୍ଟସାଧ୍ୟ ତାହା ଅନୁଭବ ବିନା ଅନ୍ୟକୁ ବୁଝାଇଦେବା କଠିନ ବିଷୟ ଅଟେ । ସେହି ସମୟରେ ଦରିଦ୍ର ଲୋକେ, ପ୍ରଜାମାନଙ୍କ ଓଳି ପଛଅଡ଼ୁ ମେଞ୍ଚା ମେଞ୍ଚା ମାଟି ଆଣି ଖାଇଦେଇ ପ୍ରତିବର୍ଷ ଶତ ଶତ ଲୋକ ଜେଲଖାନାରେ କଷ୍ଟ ଭୋଗ କରୁଅଛନ୍ତି । ଆମ୍ଭେମାନେ ଯେପରି ପ୍ରସ୍ତାବ କରୁ, ଗବର୍ଣ୍ଣମେଣ୍ଟ ସେହିପରି ଆଦେଶ ଦେଲେ ସେସବୁ ଲୁଣ ମାରିବା ନିମନ୍ତେ ପୋଲିସ ପ୍ରହରୀ ରଖିବାଦ୍ୱାରା ସହସ୍ର ସହସ୍ର ଟଙ୍କା ବ୍ୟୟ କରିବାକୁ ହେବ ନାହିଁ । କେବଳ ଉପକୂଳବାସିଙ୍କୁ ଆପଣା ଆପଣା ବ୍ୟବହାର ନିମନ୍ତେ ଲବଣ ପୋକ୍ତାନ କରିବାକୁ ଅଧିକାର ଦିଆଯାଉ । ତାହାହେଲେ ଚୋରାଲୁଣ ବନ୍ଦ ହୋଇଯିବ । ଅବଶ୍ୟ ସେହି ପ୍ରଜାମାନଙ୍କୁ ଆପଣା ଆପଣା ପୋକ୍ତାନ ଲୁଣ ନେଇ ସ୍ଥାନାନ୍ତରରେ ବିକ୍ରୟ କରିବାର ଅଧିକାର ଦିଆଯିବ ନାହିଁ । ପୂର୍ବ ଭାରତର ମୈମନସିଂ ଏବଂ ଅନ୍ୟ କେତେ ଜିଲାରେ ବିନା କରରେ ଏହିପ୍ରକାର ଲୁଣପୋକ୍ତାନ କରିବାକୁ ଅନୁମତି ଦେଇଅଛନ୍ତି । ଏହା ଆମ୍ଭେମାନେ ସମ୍ବାଦପତ୍ରିକାରେ ପାଠ କରିଅଛୁଁ ।

## ମାତୃଭାଷା ।

୪ । ମାତୃଭାଷାର ଉନ୍ନତି ଚେଷ୍ଟା ଅନ୍ୟାନ୍ୟ ପ୍ରାଣୀଠାରୁ ଯେ ମାନବଜାତି ଏତେଦୂର ଶ୍ରେଷ୍ଠତା ଲାଭ କରିଅଛନ୍ତି ଭାଷାହିଁ ସେଥିର ମୂଳ କାରଣ ଅଟେ । ଦେଶୀୟ ଜଳବାୟୁ, ଭୂମିର ଅବସ୍ଥା ଏବଂ ଅନ୍ୟ କେତେକ ପ୍ରାକୃତିକ ନିୟମର ପାର୍ଥକ୍ୟାନୁସାରେ ଏହି ପୃଥିବୀମଧ୍ୟରେ ବିବିଧ ପ୍ରକାର ଲୋକ ସୃଷ୍ଟି ହୋଇଅଛନ୍ତି । ଆମ୍ଭେମାନେ ଲୋକମାନଙ୍କର ଆକୃତି, ପ୍ରକୃତି ଦେଖି, ସେ କେଉଁ ଦେଶର ଲୋକ ତାହା ସହଜରେ ଚିହ୍ନିବାକୁ ପାରୁ । ସେମାନଙ୍କ ଶରୀର ଗଠନ ପ୍ରକୃତି ଅନୁସାରେ ସମସ୍ତଙ୍କପାଇଁ ପୃଥକ୍‌ରୂପେ ଗୋଟିଏ ଗୋଟିଏ ଭାଷା ନିରୂପିତ ଅଛି, ଏହା ସ୍ୱାଭାବିକ ତତ୍ତ୍ୱ ଅଟେ । ମାନବଶିଶୁ ସର୍ବପ୍ରଥମ ଜନନୀ କୋଳରେ ଶୋଇ ଯେଉଁ ଭାଷା ଶୁଣିବାକୁ ପାଏ, ଏଥିପାଇଁ ଏହାର ନାମ 'ମାତୃଭାଷା' । ଦେଶ ଭେଦରେ ମାତୃଭାଷା ପୃଥକ୍ ପୃଥକ୍ ଥିବାରୁ ଦେଶବାସିମାନଙ୍କର ବାକ୍ୟ ଯନ୍ତ୍ର ସେହିପରି ନିର୍ମିତ ହୋଇଅଛି । ସୁତରାଂ ଅନ୍ୟ ଦେଶଭାଷା ଅଭ୍ୟାସ କରିବା ସହଜସାଧ୍ୟ ନୁହେଁ । ଗ୍ରୀସ ଓ ଇଟାଲିଦେଶୀୟ ଲୋକମାନେ 'ହଁ', ଇଂଲଣ୍ଡ ଫ୍ରାନ୍ସ ଓ ଜର୍ମାନୀର ଲୋକମାନେ

Digitized by srujanika@gmail.com

'ହ୍ବ' ଅକ୍ଷର ଉଚ୍ଚାରଣ କରିବାକୁ ଅକ୍ଷମ । ଅସ୍ମମାନଙ୍କ ନିକଟ ପ୍ରତିବାସୀ ବଙ୍ଗାଳିମାନେ 'ଳ' ଓ 'ଣ' ଉଚ୍ଚାରଣ କରିପାରନ୍ତି ନାହିଁ । ଚୀନ, ଯାପାନ ଓ ଫରାସିମାନଙ୍କ ଭାଷା ସାନୁନାସିକ । ପାରସ୍ୟ କାବୁଲ ଓ ଆରବଦେଶୀୟ ଲୋକମାନଙ୍କ ଭାଷାରେ 'ସ' ଅକ୍ଷର ଅଭାବ । ଏଥିରୁ ଆମ୍ଭେ ସ୍ପଷ୍ଟ ବୁଝୁଅଛୁଁ ଯେ 'ସ' ଅକ୍ଷର ସ୍ପଷ୍ଟ ଉଚ୍ଚାରଣ ନିମନ୍ତେ ସେମାନଙ୍କର ବାକ୍ୟଯନ୍ତ୍ର ସୃଷ୍ଟ ହୋଇନାହିଁ । ଆମ୍ଭେମାନେ ପୂର୍ବେ କହିଅଛୁଁ ଭାଷାହିଁ ମାନବଜାତିର ଜ୍ଞାନ, ସଭ୍ୟତା ଓ ଉନ୍ନତିର ଏକମାତ୍ର କାରଣ ଅଟେ । ଏହାହିଁ ବିଧାତାଙ୍କର ବିଧାନ । ଏକଦେଶର ଭାଷା ନେଇ ଅନ୍ୟ ଗୋଟିଏ ଜାତି ଉନ୍ନତ ଲାଭ କରିଅଛନ୍ତି ଏଥିର ପ୍ରମାଣ କଦାଚିତ୍ ମିଳେ । ଅବଶ୍ୟ ଲୋକବିଶେଷ ଭିନ୍ନ ଦେଶୀୟ ଭାଷା ଅଧ୍ୟୟନ କରି ଉନ୍ନତି ଲାଭ କରିଅଛନ୍ତି ଏହା ସଚରାଚର ଦେଖାଯାଏ । କିନ୍ତୁ ସେହି ଜ୍ଞାନ ସେହି ଲୋକଠାରେ ଆବଦ୍ଧ ଥିବାର ଦେଖାଯାଏ । କିନ୍ତୁ ସେଥିପାଇଁ ଦେଶସ୍ଥ ଜାତିସାଧାରଣ ଜ୍ଞାନୀ ହୋଇପାରନ୍ତି ନାହିଁ । ଆମ୍ଭେମାନେ ପୂର୍ବେ କହିଅଛୁଁ ମାନବଜାତିର ସଭ୍ୟତା ବୃଦ୍ଧି କରଣ ଏକମାତ୍ର ଭାଷା ଅଟେ । ବିଶେଷତଃ ମାତୃଭାଷା ଯେଉଁ ଦେଶରେ ଯେତେ ଉନ୍ନତ ଏବଂ ବିସ୍ତୃତ ସେ ସେ ଦେଶର ଲୋକେ ସେହି ଅନୁସାରେ ଜ୍ଞାନୀ ଏବଂ ଉନ୍ନତ । ଅସ୍ମମାନଙ୍କର ବନ୍ୟ ପ୍ରତିବାସୀ ସାନ୍ତାଳ ଭୂମିଜ ପ୍ରଭୃତି ଜାତିଠାରୁ ଆମ୍ଭେମାନେ ଯେ ଉନ୍ନତ ଏଥିରେ କୌଣସି ସନ୍ଦେହ ନାହିଁ । ତାହାର କାରଣ ଅସ୍ମମାନଙ୍କର ଭାଷା ଉନ୍ନତ । ଏହି ଭାଷା ଉନ୍ନତାବନତି ଅବସ୍ଥାନୁପାତରେ ଇଂରେଜ, ଜର୍ମାନ ପ୍ରଭୃତି ପାଶ୍ଚାତ୍ୟ ଜାତି ଅସ୍ମମାନଙ୍କଠାରୁ ସଭ୍ୟ ଓ ଜ୍ଞାନୀ, ଏହା ଆମ୍ଭେମାନେ ପ୍ରତ୍ୟକ୍ଷରେ ଦେଖୁଅଛୁଁ । ସେହିକାରଣରୁ ମଧ୍ୟ ଗୋଟିଏ ଗୋଟିଏ ଜାତି ଅନ୍ୟାନ୍ୟ ଜାତିମାନଙ୍କଠାରେ ସମ୍ମାନିତ ଏବଂ ପୂଜ୍ୟ ହୋଇଥାନ୍ତି । ପ୍ରକୃତରେ ମାତୃଭାଷା ସହାୟତା ବିନା ଜାତି ସାଧାରଣ ମଧ୍ୟରେ ଜ୍ଞାନୀ ହେବା ସହଜସାଧ୍ୟ ନୁହେ । ଭିନ୍ନ ଭାଷା ସମ୍ବନ୍ଧେ ଜ୍ଞାନ ଜାତିମଧ୍ୟରେ ପ୍ରବେଶ କରିବା ଜଳ ଉପରେ ଘୃତ ବିନ୍ଦୁ ପତନ ପରି ଅର୍ଥାତ୍ ସେହି ଜ୍ଞାନଠାରୁ ଅନ୍ୟ ଲୋକ ଜ୍ଞାନଲାଭ କରିପାରନ୍ତି ନାହିଁ । ମାତୃଭାଷାରେ ସମାଜ ମଧ୍ୟରେ ଜ୍ଞାନ ବିସ୍ତାର ଉପାୟ ଅବଲମ୍ବନ ଜଳ ଉପରେ ତୈଳବିନ୍ଦୁ ସମାନ ଅଟେ । ଯେହେତୁ ସେପ୍ରକାର ଜ୍ଞାନଠାରୁ ପାର୍ଶ୍ୱବର୍ତ୍ତୀ ଲୋକମାନେ ଜ୍ଞାନ ସଂଗ୍ରହ କରିବାକୁ ସକ୍ଷମ ହୁଅନ୍ତି । ଶିକ୍ଷାର ଅନେକ ବିଭାଗ ଅଛି । ସେଥିମଧ୍ୟରୁ କୃଷି, ଶିଳ୍ପ, ବାଣିଜ୍ୟ ସାହିତ୍ୟାଦି ଲଳିତ ବିଦ୍ୟା ଦେଶୀୟ ଭାଷାରେ ପ୍ରଚଳିତ ହେବା ଉଚିତ । ଯେହେତୁ ସେହି ସବୁ ବ୍ୟବସାୟୀମାନଙ୍କୁ ବିଦେଶୀ ଭାଷାରେ ଶିକ୍ଷା ଦାନ କରିବା ସହଜସାଧ୍ୟ ନୁହେ ଏବଂ ଅନେକ ସ୍ଥଳରେ ଅସାଧ୍ୟ ଅଟେ । ଦେଶରେ ଶିକ୍ଷା ବିସ୍ତାର କରାଇବାର ଆବଶ୍ୟକ ହେଲେ ପ୍ରଥମେ ଜନନୀମାନଙ୍କୁ ସୁଶିକ୍ଷିତା କରାଇବା ଉଚିତ । ଅସ୍ମମାନଙ୍କର ଦେଶୀୟ କନ୍ୟାଗଣ ୮।୯ ବର୍ଷ ପର୍ଯ୍ୟନ୍ତ ଶିକ୍ଷା ପ୍ରାପ୍ତ ହୋଇଥାନ୍ତି । ଏହି ଅତ୍ୟଳ୍ପ ସମୟରେ ସୁଶିକ୍ଷିତା ହେବା ଅସମ୍ଭବ । ପିତା ଏବଂ ଅଭିଭାବକମାନେ ପୁତ୍ରମାନଙ୍କ ସକାଶେ ପାଠ୍ୟ ପୁସ୍ତକ

Digitized by srujanika@gmail.com

କିଣିବାପାଇଁ ଯେତେ ଅର୍ଥ ବ୍ୟୟ କରନ୍ତି, କନ୍ୟାମାନଙ୍କ ପାଇଁ ତାହା କରନ୍ତି ନାହିଁ । ଅମ୍ଭମାନଙ୍କ ବିବେଚନାରେ କନ୍ୟାମାନଙ୍କୁ ଶିକ୍ଷିତ କରାଇବା ପାଇଁ ସେମାନଙ୍କ ଶିକ୍ଷାର ଉପଯୁକ୍ତ ପୁସ୍ତକ ସେମାନଙ୍କୁ କିଣି ଦିଆଯାଉ । କିମ୍ବା ଗ୍ରାମସ୍ଥ ଲୋକମାନଙ୍କ ଦତ୍ତ ଚାନ୍ଦାରେ ପୁସ୍ତକ କିଣାଯାଇ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକାଳୟ ସ୍ଥାପନ କରାଯାଉ । ସେହି ସ୍ଥାନରୁ ପୁସ୍ତକ ନେଇ ଆପଣା ଆପଣା ଘରେ ପଢ଼ିବାକୁ ସକ୍ଷମା ହେବେ ।

ଦ୍ୱିତୀୟ ପ୍ରସ୍ତାବ—ଗ୍ରାମ ମଧ୍ୟରେ କିଞ୍ଚିତ ଅଧିକ ଶିକ୍ଷିତା ସ୍ତ୍ରୀବିଶେଷଙ୍କୁ ମାସିକ କିଛି କିଛି ବୃତ୍ତି ଦିଆଯାଉ । ସେ ଘରେ ଘରେ ବୁଲି କିମ୍ବା ଏକସ୍ଥାନରେ କେତେଗୋଟି ବଧୂ ବା କନ୍ୟାଙ୍କୁ ବସାଇ ପ୍ରତିଦିନ ସାୟାହ୍ନ ସମୟରେ ରାମାୟଣ, ମହାଭାରତ ଓ ଭାଗବତ ପ୍ରଭୃତି ପୁସ୍ତକ ପଢ଼ାଇ ଶୁଣାଇବେ । ଏହିପରି ଉପାୟ ଅବଲମ୍ବନ ଦ୍ୱାରା ପ୍ରତିଦିନ ଆଲୋଚନା ଯୋଗେ ପୁସ୍ତକ ପାଠ ବିଷୟରେ କନ୍ୟାମାନେ ଅଭ୍ୟସ୍ତା ହୋଇଯିବେ ।

“ଓଡ଼ିଆ”

ଅମ୍ଭମାନଙ୍କର ଗଭର୍ଣ୍ଣମେଣ୍ଟ ଇଂରାଜୀ ଜାତି । ଅମ୍ଭମାନଙ୍କର ଅଭାବ ଅଭିଯୋଗମାନ ତାହାଙ୍କୁ ଇଂରାଜୀ ଭାଷାରେ ଜଣାଇବା ଆବଶ୍ୟକ । ସରକାରଙ୍କ ଅଭ୍ୟନ୍ତରୀଣ ଘଟଣାମାନ ରାଜପୁରୁଷଙ୍କୁ ଜଣାଇବାକୁ ହେଲେ ଇଂରାଜୀ ପତ୍ରିକାର ସହାୟତା ଆବଶ୍ୟକ । ଅମ୍ଭମାନଙ୍କ କଥାର ଯଥାର୍ଥ୍ୟ ପ୍ରମାଣ ନିମନ୍ତେ ନିମ୍ନଲିଖିତ ଦୃଷ୍ଟାନ୍ତ ଉଲ୍ଲେଖ କରିବା ନିମନ୍ତେ ଇଚ୍ଛା କରୁଁ । କେତେକ ବର୍ଷ ପୂର୍ବେ ବଙ୍ଗଦେଶ ଶାସନ ସମ୍ପର୍କେ ଭୁଲ ଭାବରେ ବିଭକ୍ତ ହେବାରୁ ଦେଶସ୍ଥ ଇଂରାଜୀ ସମ୍ବାଦ ପତ୍ରିକାମାନ ଭୟଙ୍କରରୂପେ ଆନ୍ଦୋଳନ କରି ବିଲାତବାସୀମାନଙ୍କୁ ବିଚଳିତ କରାଇ ଦେଇଥିଲେ । ଫଳସ୍ୱରୂପ ଅବିଳମ୍ବେ ପ୍ରତିକାର କରିବାକୁ ସମର୍ଥ ହୋଇଥିଲେ । କିନ୍ତୁ ଅମ୍ଭମାନଙ୍କର ଉତ୍କଳଖଣ୍ଡ ଚତୁର୍ଦ୍ଧା ବିଭକ୍ତ, ମାତୃଭାଷା ଏବଂ ଜାତୀୟ ଶକ୍ତି କ୍ରମଶଃ ହ୍ରାସ ହେଉଥିଲେ ମଧ୍ୟ ଅମ୍ଭମାନଙ୍କର ପ୍ରକୃତ ଅବସ୍ଥା ରାଜପୁରୁଷ କିମ୍ବା ବିଲାତବାସୀମାନଙ୍କୁ ଜଣାଇ ପାରୁନାହୁଁ । ଅମ୍ଭମାନଙ୍କର ପ୍ରତିବାସୀ ବଙ୍ଗାଳି, ବିହାରି ଓ ଅନ୍ଧ୍ରଜାତିମାନଙ୍କ ମଧ୍ୟରେ ଅନେକ ଗୁଡ଼ିଏ ଦୈନିକ ସାପ୍ତାହିକ ଇଂରାଜୀ ପତ୍ରିକା ଥିଲେ ମଧ୍ୟ ଅମ୍ଭମାନଙ୍କ ଉତ୍କଳ ଦେଶରେ ନିତାନ୍ତ ଅଭାବ ଥିଲା । ଏହା ଜାତି ପକ୍ଷରେ ନିତାନ୍ତ ଲଜ୍ଜା ଏବଂ କଳଙ୍କର ବିଷୟ ଅଟେ ।

ଅତ୍ୟନ୍ତ ଆନନ୍ଦ ଏବଂ ଆଶାର ବିଷୟ ଗତବର୍ଷଠାରୁ ‘ଓଡ଼ିଆ’ ନାମକ ଗୋଟିଏ ସାପ୍ତାହିକ ଇଂରାଜୀ ପତ୍ରିକା ପ୍ରକାଶିତ ହୋଇଅଛି । ଏହି ଅଳ୍ପକାଳ ମଧ୍ୟରେ ଦେଶର ଅନେକ ହିତକର ବିଷୟ ଏବଂ ଉତ୍କଳ ମିଳନ ସମ୍ବନ୍ଧେ କେତେକ ଓଜସ୍ୱିନୀୟ ପ୍ରବନ୍ଧ ପ୍ରକାଶିତ ହୋଇଗଲଣି । ଏହାର ଦୀର୍ଘ କଳେବର ଏବଂ ଦୈନିକ ରୂପ ଧାରଣ କରାଇବା ନିମନ୍ତେ ପ୍ରତ୍ୟେକ ଶିକ୍ଷିତ ଯୁବକ ଉତ୍କଳବାସୀ ପକ୍ଷରେ ଉଚିତ ଅଟେ । ଅମ୍ଭେମାନେ ଅନୁମାନ କରୁ ଏହି “Oriya” ପତ୍ରିକା

Digitized by srujanika@gmail.com

ପ୍ରତି ଶିକ୍ଷିତ ଲୋକମାନଙ୍କର ସମ୍ମାନଭୁକ୍ତ ଅଙ୍ଗ । କାରଣ ଏହାର ଗ୍ରାହକ ହେବା ନିମନ୍ତେ ଆମ୍ଭେମାନେ ଯେତେଜଣଙ୍କୁ ଅନୁରୋଧ କରିଅଛୁ ସମସ୍ତେ ସ୍ୱୀକୃତ ହୋଇ ଗ୍ରାହକ ଶ୍ରେଣୀଭୁକ୍ତ ହୋଇଅଛନ୍ତି ଏବଂ ଅନ୍ୟ ଗ୍ରାହକ ସଂଗ୍ରହ କରାଇ ଦେବା ନିମନ୍ତେ ଆମ୍ଭମାନଙ୍କ ନିକଟରେ ପ୍ରତିଶ୍ରୁତ ହୋଇ ଯାଇଅଛନ୍ତି । ଦୟାମୟ ପରମେଶ୍ୱର ଏହି କ୍ଷୁଦ୍ର ପତ୍ରିକା ଖଣ୍ଡ ପ୍ରତି ଆଶୀର୍ବାଦ ପ୍ରଦାନ କରନ୍ତୁ ।

"ଉତ୍କଳର ସୈନ୍ୟ"

ଆମ୍ଭମାନଙ୍କର ମହାମାନ୍ୟ ଗଭର୍ଣ୍ଣମେଣ୍ଟ ଏ ଦେଶୀୟ ଯୁବକମାନଙ୍କୁ ସୈନ୍ୟ ଶ୍ରେଣୀ ଭୁକ୍ତ ହେବା ନିମନ୍ତେ ସୁଯୋଗ ଦେଇ ଗୋଟିଏ ବିଶେଷ ଉପକାର ସାଧନ କରିଅଛନ୍ତି । ଆମ୍ଭେମାନେ ଆଶାକରୁଁ ଦେଶୀୟ ଶିକ୍ଷିତ ଯୁବକଗଣ ଏହି ସୁଯୋଗ ପରିତ୍ୟାଗ କରିବେ ନାହିଁ । ବଙ୍ଗଦେଶରୁ ଅନେକ ଯୁବକ ଯୁଦ୍ଧବିଦ୍ୟା ଶିଖି ଅପି ଦେଶ ମଧ୍ୟରେ କେତେ ସମ୍ମାନ ଲାଭ କରୁଅଛନ୍ତି । ମେସପଟାମିଆ ଏବଂ ଫ୍ରାନସ୍ ଯୁଦ୍ଧରେ କୃତିତ୍ୱ ଦେଖାଇବାଦ୍ୱାରା ସେମାନଙ୍କର ଗୌରବ ସମ୍ବାଦ ପତ୍ରିକାରେ ଘୋଷିତ ହୋଇଅଛି ।

ନିଜସ୍ୱ ଏବଂ ସ୍ୱଦେଶର ସମ୍ପତ୍ତି ତସ୍କରମାନଙ୍କ ହସ୍ତରୁ ରକ୍ଷା କରିବା ନିମନ୍ତେ ବୀରତ୍ୱ ଏବଂ ଯୁଦ୍ଧବିଦ୍ୟା ଅଭ୍ୟସ୍ତ ରଖିବା ନିମ୍ନା ଅତ୍ୟାଗ୍ରସ ବଳିଷ୍ଠ ଲୋକ ହସ୍ତରୁ ସ୍ୱମାନଙ୍କର ଧନ ପ୍ରାଣ ରକ୍ଷା କରିବା ଆବଶ୍ୟକ । ଏଥିପାଇଁ ବୀରମାନେ ଜଗତରେ ପୂଜ୍ୟ । ଗଡଜାତମାନଙ୍କରେ ପାଇକମାନଙ୍କର ଯେମନ୍ତ ବୀରତ୍ୱ ଏବଂ କୌଶଳ ଦେଖିଅଛୁ, ଆଶାକରେ ଏମାନେ ଯୁଦ୍ଧବିଦ୍ୟା ଶିକ୍ଷାକଲେ କିଛିଦିନ ଉତ୍ତାରେ ଗୋଟିଏ ଯୋଦ୍ଧାଦଳ ପ୍ରସ୍ତୁତ ହୋଇପାରିବେ । ମଞ୍ଜି ପୋତିଲେ ସେଥିରୁ ଯେଉଁ ବୃକ୍ଷ ଜାତ ହୁଏ ସେ ଗଛଟି ବଢିବାକୁ ଏବଂ ମୋଟା ହେବାକୁ ଯେତେଦିନ ପ୍ରୟୋଜନ ହୁଏ, ଗୋଟିଏ ପ୍ରାଚୀନ ଘଟଣା ବିଶେଷରେ ଭଗ୍ନ ଛିନ୍ନ ଭିନ୍ନ ବୃକ୍ଷ ଗଛମୂଳରୁ ଯେଉଁ ଗଜାଟିଏ ବାହାରେ ତାହା ଅଳ୍ପଦିନ ମଧ୍ୟରେ ଖୁବ୍ ବଡ ଓ ମୋଟା ହୋଇଯାଏ । ଓଡ଼ିଆ ଜାତି ଦୁଇଶତ ବର୍ଷ ପର୍ଯ୍ୟନ୍ତ ମରହଟ୍ଟା ଏବଂ ମୁସଲମାନମାନଙ୍କ ସହିତ ଯୁଦ୍ଧରେ ଯେପରି ବୀରତ୍ୱ ଦେଖାଇଥିଲେ ତାହା ଇଂରାଜୀ ଏବଂ ପାର୍ଶିମାନଙ୍କ ଲିଖିତ ଇତିହାସରୁ ପ୍ରମାଣ ମିଳେ । ଆମ୍ଭେମାନେ ଢେଙ୍କାନାଳ, ହିନ୍ଦୋଳ, ତାଳଚେର ଓ ଅନୁଗୁଳ ପ୍ରଭୃତି କେତେକ ଗଡଜାତସ୍ଥିତ ପାଇକମାନଙ୍କର ପାରିଧି ଏବଂ କୃତ୍ରିମ ରଣ-କୌଶଳ ୩୦ । ୪୦ ବର୍ଷ ପୂର୍ବେ ଦେଖିଥିଲୁ । ସେମାନେ ଯେ ଐତିହାସିକ ବୀରପୁରୁଷମାନଙ୍କର ବଂଶଧର ସେମାନଙ୍କର କାର୍ଯ୍ୟ ଦେଖିଲେ ସହଜରେ ଅନୁମିତ ହୁଏ । ଶିକ୍ଷିତ ଉତ୍କଳର ଉଚ୍ଚ ବଂଶଜ ଯୁବକମାନେ ସ୍ଥିତମତ ଶିକ୍ଷା ପ୍ରାପ୍ତ ହେଲେ ଉପଯୁକ୍ତ ବୀର ଏବଂ ଯୁଦ୍ଧକୁଶଳ ହୋଇ ପାରିବେ ଏଥିରେ କିଛି ସନ୍ଦେହ ନାହିଁ । ପୁନର୍ବାର ଆମ୍ଭେମାନେ ଆଶା ଏବଂ ଅନୁରୋଧ କରୁଅଛୁଁ ଉତ୍କଳ ଯୁବକ ଏହି ସୁଯୋଗ ନ ଛାଡନ୍ତୁ । ଅତ୍ୟନ୍ତ ଆନନ୍ଦର ବିଷୟ ସତ୍ୟବାଦୀ ସ୍କୁଲ ଏବଂ କଟକ କଲେଜରୁ ଉଚ୍ଚ ବଂଶଜ

Digitized by srujanika@gmail.com

ଶିକ୍ଷିତ ଯୁବକ ଉକ୍ତ ପ୍ରକାର ସୈନ୍ୟ ଶ୍ରେଣୀଭୁକ୍ତ ହୋଇ ଆମ୍ଭମାନଙ୍କର ମାତୃ ସମ୍ଭ୍ରମ ରକ୍ଷା କରିବାରୁ ଭବିଷ୍ୟତ୍ ଇତିହାସରେ ସେମାନଙ୍କର ନାମ ସ୍ୱର୍ଣ୍ଣାକ୍ଷରରେ ଲିଖିତ ରହିବ ।

## ମାତାର ଖେଦ ।

ମାଆ, ମାଆ ବୋଲି ଡାକୁଥିବ ମୋତେ ଆରେ ମୋ ଦୁଃଖ-ପାସୋରି,
କାହିଁ ଯାଇଁ ତେଇଁ ଶୋଇଥିଲ ବାପ ମୋ ମନ-ନୟନ-ତାରି ।
ଏବେ ଘରକ୍ଷୀର ରୂପେ ମୋ ରୁଧିର
ବଦାଉ ହୃଦୟ ଯୋଗାଏଁ ଆହାର
ମୋ ସୁଖ ସମ୍ପଦ କରି ଅଛ ଚୁରି
ଭୁଲି ଯାଉଅଛ ପରି । ୧ ।
ମୁଣ୍ଡ ଗଣ୍ଡି ମୋର ହୋଇ ଖଣ୍ଡ ଖଣ୍ଡ
ମୋ ସୁନା ସଂସାର ହେଲା ଲଣ୍ଡଭଣ୍ଡ
ଦେଖୁଥିବ କରେ ମା ର ଏହିଦଣ୍ଡ
ମୋ ତନ-ସର-ପସରି । ୨ ।
ହାତ ଓଠ ଧରି କାନ୍ଦୁଛିରେ ଧନ
ମୋ ଦୁଃଖ ନାଶନେ ବଳା ଏବେ ମନ
ଛାଡ଼ି ହିଂସା, ଦ୍ୱେଷ, ମାନ, ଅଭିମାନ
ମାତା-ଦୁଃଖ-ଶୋକହରି । ୩ ।
ମୋ ବାପ ପରିରେ ଜଗତର ପିତା
ଦୁଃଖିନୀ ବୋଲି କି ହେବ ତାଙ୍କୁ ପିତା
ପୁତ ବଳେ ମୁଁ ତ ହେବି ଜଗଜିତା
ପୁଏ ପଣ କଲେ ପରି । ୪ ।

## ଉତ୍କଳ ସମ୍ମିଳନୀର ୧୩ଶ ଅଧିବେଶନର ପ୍ରସ୍ତାବିତ ନିର୍ଦ୍ଧାରଣ ।

### ପ୍ରଥମ ନିର୍ଦ୍ଧାରଣ

ଉପସ୍ଥିତ ଇଉରୋପୀୟ ମହାସମରରେ ଆମ୍ଭମାନଙ୍କ ସମ୍ରାଟ ତାହାଙ୍କର ମିତ୍ରଶକ୍ତିମାନଙ୍କୁ ଘେନି ମାନବ ଜାତିରେ ନ୍ୟାୟର ଟେକ ରଖିବା ସକାଶେ ଜର୍ମ୍ମାନ ସମ୍ରାଟଙ୍କ ସହିତ ଯେଉଁ ଯୁଦ୍ଧରେ ଲିପ୍ତ ଅଛନ୍ତି ତହିଁରେ ସେ ଜୟଲାଭ କରନ୍ତୁ, ସେଥି ସକାଶେ ଏହି ସମ୍ମିଳନୀ ଈଶ୍ୱରଙ୍କଠାରେ ପ୍ରାର୍ଥନା କରନ୍ତି ଏବଂ ଏହି ଭୀଷଣ ଯୁଦ୍ଧ ସମୟରେ ବ୍ରିଟିଶ ରାଜସିଂହାସନ ପ୍ରତି ଉତ୍କଳ ପ୍ରଜାମାନଙ୍କର ଚିରନ୍ତନ ଗଭୀର ରାଜଭକ୍ତି ଅକ୍ଷୁଣ୍ଣ ଥିବାର ଲିପିବଦ୍ଧ କରୁଅଛନ୍ତି ।

Digitized by srujanika@gmail.com

ପ୍ର—ଯୁବରାଜ ସାହେବ—ଟେକାଲି

ଅ—ମହନ୍ତ, ରାଧାକାନ୍ତ ମଠ—ପୁରୀ

ସ—ଗୋବିନ୍ଦପ୍ରସାଦ ବସୁ

ସେଖ୍ ମନ୍ସୁର

ମିଃ ଜ: ଏନ: ମେଷ୍ଟ

୨ୟ ନିର୍ଦ୍ଧାରଣ

ରାୟ ବାହାଦୁର ଗୌରୀଶଙ୍କର ରାୟଙ୍କ ପରଲୋକ ଗମନରେ ସମସ୍ତ ଉତ୍କଳଭାଷୀ ପ୍ରଦେଶର ଯେଉଁ କ୍ଷତି ହୋଇଅଛି, ସେଥିସକାଶେ ସମ୍ମିଳନୀ ହୃଦୟର ଦୁଃଖ ପ୍ରକାଶ କରୁଅଛନ୍ତି ଏବଂ ପରଲୋକଗତ ଆତ୍ମା ଶାନ୍ତିରେ ରହନ୍ତୁ ଏଥି ସକାଶେ ପ୍ରାର୍ଥନା କରୁଅଛନ୍ତି ।

ପ୍ର—ମିଃ, ମଧୁସୂଦନ ଦାସ

ଅ—ରାୟ ବାହାଦୁର ସୁଦାମଚରଣ ନାୟକ

ସ—ଶ୍ରୀଯୁକ୍ତ ବାବୁ ରାମକୃଷ୍ଣ ପଟ୍ଟନାୟକ ।

ତୃତୀୟ ନିର୍ଦ୍ଧାରଣ ।

ଉତ୍କଳ ସମ୍ମିଳନୀର ନିର୍ଦ୍ଧାରଣମାନ କାର୍ଯ୍ୟରେ ପରିଣତ କରିବା ସକାଶେ ଗୋଟିଏ କାଉନସିଲ ଓ ଗୋଟିଏ କାର୍ଯ୍ୟନିର୍ବାହକ ସମିତି ଗଠିତ ହେବାର ଆବଶ୍ୟକ ଏବଂ ସେ ସବୁର ସଭ୍ୟମାନେ ଏହି ସମ୍ମିଳନୀରେ ନିର୍ବାଚିତ ହେବାର ଉଚିତ ବୋଲି ସମ୍ମିଳନୀ ମନେ କରନ୍ତି । ଆଗାମୀ ଅଧିବେଶନ ପର୍ଯ୍ୟନ୍ତ ଏହି କାଉନସିଲର ସଭ୍ୟମାନଙ୍କ ସଂଖ୍ୟା ୬୮ ଜଣ ସ୍ଥିର କରାଯାଉ । ତନ୍ମଧ୍ୟରୁ ନିମ୍ନଲିଖିତମତେ ପ୍ରତି ଜିଲ୍ଲାରୁ ସଭ୍ୟ ଗ୍ରହଣ କରାଯାଉ ।

| | | | |
|---|---|---|---|
| କଟକ—୧୫ | ସମ୍ବଲପୁର—୫ | ସିଂହଭୂମି—୨ | ମଧ୍ୟପ୍ରଦେଶ—୩ |
| ପୁରୀ—୧୦ | ଗଞ୍ଜାମ—୧୦ | ଗଡ଼ଜାତ—୧୦ | ଅନୁଗୁଳ—୧ |
| ବାଲେଶ୍ୱର—୮ | ମେଦିନୀପୁର—୧ | ଭିଜାଗାପଟ୍ଟମ—୩ | |

ଶ୍ରୀଯୁକ୍ତ ରାଜା ସାହେବ କନିକାଙ୍କୁ ସଭାପତି ଓ ମାନ୍ୟବର ମଧୁସୂଦନ ଦାସଙ୍କୁ ସମ୍ପାଦକ ନିଯୁକ୍ତ କରାଯାଉ । କାଉନସିଲର ଖର୍ଚ୍ଚ ସକାଶେ ପ୍ରତ୍ୟେକ ସଭ୍ୟ ବାର୍ଷିକ ଅନ୍ୟୁନ ୫ ଟଙ୍କା ଚାନ୍ଦା ଦେଉନ୍ତୁ ।

କାଉନସିଲ ତାହାଙ୍କ ନିୟମାବଳୀ ପ୍ରସ୍ତୁତ କରନ୍ତୁ ଏବଂ ଗତବର୍ଷ ୯ ମ ନିର୍ଦ୍ଧାରଣ ଅନୁସାରେ ହୋଇଥିବା ନିୟମାବଳୀ ଉକ୍ତ କାଉନସିଲ ସମୀପରେ ବିଚାର ନିମନ୍ତେ ଅର୍ପିତ କରାଯାଉ ।

ପ୍ର—ସଭାପତି

ଚତୁର୍ଥ ନିର୍ଦ୍ଧାରଣ ।

ଆଗାମୀ ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ କଟକଠାରେ ହେଉ । ନିମ୍ନଲିଖିତ ୧୦ ଜଣ ସଭ୍ୟଙ୍କୁ ନେଇ ଗୋଟିଏ କାର୍ଯ୍ୟନିର୍ବାହକ ସମିତି ଗଠିତ ହେଉ ।

Digitized by srujanika@gmail.com

ବାବୁ କଲ୍ପତରୁ ଦାସ—ସମ୍ପାଦକ,
ବାବୁ ଲକ୍ଷ୍ମୀଧର ମହାନ୍ତି,
,, ରାଧାକୃଷ୍ଣ ବସୁ,
,, ବରଦାନନ୍ଦ ଦାସ,
ବାବୁ ପାରେଶ୍ୱର ମହାନ୍ତି,
ବାବୁ ରେବତୀକାନ୍ତ ଘୋଷ,
ମାନ୍ୟବର ବାବୁ ବ୍ରଜସୁନ୍ଦର ଦାସ,
ବାବୁ ଚନ୍ଦୁଲାଲ,
ରେଃ ବ୍ରହ୍ମାନନ୍ଦ ଦାସ,
ମୌଲବି ଅଲ୍ଲା ବକସ୍,

ପ୍ର—,, ରାଧାକୃଷ୍ଣ ବସୁ ଏମ୍, ଏ
ଅ—ବାବୁ ବିମ୍ବାଧର ଦାସ

ପଞ୍ଚମ ନିର୍ଦ୍ଧାରଣ ।

ଉତ୍କଳଭାଷୀ ପ୍ରଦେଶରେ କପାଗୃହର ବିସ୍ତାର ନିମନ୍ତେ ବହୁତ ଉପାୟମାନ ସ୍ଥିରକରି ତାହା କାର୍ଯ୍ୟରେ ପରିଣତ କରିବାର ଭାର କାର୍ଯ୍ୟନିର୍ବାହକ ସମିତି ଉପରେ ଅର୍ପିତ ହେଉ ।

ପ୍ର—ବାବୁ କଲ୍ପତରୁ ଦାସ
ଅ—ବାବୁ ଲାଲମୋହନ ପତି

ଷଷ୍ଠ ନିର୍ଦ୍ଧାରଣ ।

ଓଡ଼ିଶା ଉପକୂଳକୁ ଲବଣ ଗୋଲ୍ଲାନ ଉଠିଯିବାଦ୍ୱାରା ବହୁସଂଖ୍ୟକ ଶ୍ରମଜୀବୀମାନଙ୍କର ଜୀବିକା ନିର୍ବାହରେ ବିଶେଷ ବ୍ୟାଘାତ ଘଟିଥିବାର ସମ୍ମିଳନୀ ଉପଲବ୍ଧି କରନ୍ତି ଏବଂ ଉପସ୍ଥିତ ଯୁଦ୍ଧ ଯୋଗେ ଲବଣର ମୂଲ୍ୟବୃଦ୍ଧି ହୋଇଥିବାରୁ ସେମାନଙ୍କର ବିଶେଷ କଷ୍ଟ ହେଉଥିବାର ସମ୍ମିଳନୀ ହୃଦୟଙ୍ଗମ କରନ୍ତି । ଏହି କଷ୍ଟ ଦୂର କରିବା ନିମନ୍ତେ ଲବଣଗୋଲ୍ଲାନ ପୁନଃପ୍ରବର୍ତ୍ତନ କରିବା ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରାଯାଉ ।

ପ୍ର—ବାବୁ ଜଗବନ୍ଧୁ ସିଂହ
ଅ—ମୌଲବି ସେଖ ମଜାରୁଦ୍ଦିନ
ସ—ବାବୁ ପାରେଶ୍ୱର ମହାନ୍ତି

ସପ୍ତମ ନିର୍ଦ୍ଧାରଣ ।

ସମଗ୍ର ଉତ୍କଳଭାଷୀ ପ୍ରଦେଶ ଏକଶାସନାଧୀନ ନ ରହି ଭିନ୍ନ ଶାସନାଧୀନ ଥିବାରୁ ଓଡ଼ିଆଜାତି ଭାରତର ଅନ୍ୟାନ୍ୟ ଜାତିଙ୍କପରି ଉନ୍ନତ ମାର୍ଗରେ ଅଗ୍ରସର ହୋଇପାରୁ ନ ଥିବାର ଏହି ସମ୍ମିଳନୀ ହୃଦୟଙ୍ଗମ କରନ୍ତି ଏବଂ ଭିନ୍ନ ଭିନ୍ନ ଶାସନାଧୀନରେ ଥିବାହେତୁ ଯେଉଁସବୁ ପ୍ରକାର ଅସୁବିଧା ଘଟୁଅଛି ତାହା ବିଶେଷ ଭାବରେ ଜାଣିବା ଓ କେଉଁ ଅଞ୍ଚଳର ଓଡ଼ିଆମାନେ ଏକଶାସନାଧୀନ ହେବାକୁ ଇଚ୍ଛା କରନ୍ତି ତାହା ଅନୁସନ୍ଧାନଦ୍ୱାରା ସ୍ଥିର କରି ଗବର୍ଣ୍ଣମେଣ୍ଟଙ୍କୁ ଜଣାଇବା ଏହି ସମ୍ମିଳନୀ ଆବଶ୍ୟକ ମନେକରନ୍ତି—

ପ୍ର—ରାଜାସାହେବ, ଧରକୋଟ

Digitized by srujanika@gmail.com

ପ୍ର—ମାନଧାତା ଗୋସ୍ୱାର ପତ୍ରନାୟକ
ବାବୁ ରେବତୀକାନ୍ତ ଘୋଷ
ସ—ସେଖ ଅସାଦୁଲ
ମାନ୍ୟବର ବାବୁ ଗୋପବନ୍ଧୁ ଦାସ

### ଅଷ୍ଟମ ନିର୍ଦ୍ଧାରଣ ।

ଓଡ଼ିଶା ପକ୍ଷରୁ ମହାମାନ୍ୟ ବଡ଼ଲାଟଙ୍କ ବ୍ୟବସ୍ଥାପକସଭାରେ ଦୁଇଜଣ ସଦସ୍ୟ ଏବଂ ବହାର ଓଡ଼ିଶା ଗବର୍ଣ୍ଣମେଣ୍ଟଙ୍କ ମନ୍ତ୍ରୀସଭାରେ ଓଡ଼ିଶା ପକ୍ଷରୁ ଜଣେ ଅତରିକ୍ତ ବେସରକାରୀ ସଦସ୍ୟ ନିଯୁକ୍ତ କରିବା ସକାଶେ ଗବର୍ଣ୍ଣମେଣ୍ଟଙ୍କୁ ପ୍ରାର୍ଥନା କରାଯାଉ ।

ପ୍ର—ସଭାପତି

### ନବମ ନିର୍ଦ୍ଧାରଣ ।

ପୁରୀର ଜଗନ୍ନାଥମନ୍ଦିର ଓ ଅନ୍ୟାନ୍ୟ ତୀର୍ଥମାନଙ୍କର ଜୀର୍ଣ୍ଣସଂସ୍କାର ନିମନ୍ତେ ସମସ୍ତ ଭାରତବର୍ଷରୁ ଅର୍ଥ ସଂଗ୍ରହ ପାଇଁ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗୋଟିଏ କମିଟି ଗଠିତ ହେଉ ଓ ସଭ୍ୟ ସଂଖ୍ୟା ବୃଦ୍ଧି କରିବା କ୍ଷମତା କମିଟି ଉପରେ ନ୍ୟସ୍ତ ହେଉ ।

ରାଜା ମୁକୁନ୍ଦଦେବ, ଢେଙ୍କାନାଳର ରାଜାସାହେବ, ରାଜା ବାହାଦୁର, ଅଠଗଡ଼, ମହାରାଜା ସୋନପୁର, ମାନ୍ୟବର କନିକାର ରାଜାସାହେବ, ପାରଳାର ରାଜାସାହେବ, ମହନ୍ତ ଏମାରମଠ, ମହନ୍ତ ଦକ୍ଷିଣପାର୍ଶ୍ୱ ମଠ, ମହନ୍ତ ରାଧାକାନ୍ତ ମଠ, ମହନ୍ତ ସତ୍ୟପ୍ରକାଶ, ପୁରୀଦେଉଳ ମେନେଜର୍, ମହନ୍ତ ଉତ୍ତରପାର୍ଶ୍ୱ, ମାନ୍ୟବର ପଣ୍ଡିତ ଗୋପବନ୍ଧୁ ଦାସ, ମହାମହୋପାଧ୍ୟାୟ ସଦାଶିବ ମିଶ୍ର କାବ୍ୟକଣ୍ଠ, ରାଜାବାହାଦୁର ପାଲଲହଡ଼, ମାନ୍ୟବର ବ୍ରଜସୁନ୍ଦର ଦାସ, ରାୟବାହାଦୁର ସୁଦାମଚରଣ ନାୟକ, ମାନ୍ୟବର ଗଣେଶଲାଲ ପଣ୍ଡିତ, ଚୌଧୁରୀ ଗୀତକୃଷ୍ଣ ଦାସ, ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ ।

ପ୍ର—ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ
ଅ—ରାଜାସାହେବ, କନିକା
ସ—ମହନ୍ତ, ଏମାରମଠ
ବାବୁ ନୀଳକଣ୍ଠ ଦାସ ଏମ୍, ଏ

### ଦଶମ ନିର୍ଦ୍ଧାରଣ ।

ଯେଉଁ ମୁସଲମାନ ଯୁବକମାନେ ତ୍ୟାଗସ୍ୱୀକାର କରି କଟକ ମସ୍ଲେମ ସେମିନାରୀ ସ୍ଥାପନ କରଅଛନ୍ତି ତଦ୍ଦ୍ୱାରା ହିନ୍ଦୁ ଓ ମୁସଲମାନ ଉଭୟ ସମାଜର ବାଳକମାନଙ୍କର ବିଶେଷ ଉପକାର ସାଧିତ ହେଉଥିବା ଓ ଉଭୟ ସମାଜ ମଧ୍ୟରେ ସୌହାର୍ଦ୍ଦ୍ୟ ବୃଦ୍ଧି ହେଉଥିବାରୁ ଉତ୍କଳସମ୍ମିଳନୀ ପକ୍ଷରୁ ସେମାନଙ୍କୁ ଧନ୍ୟବାଦ ଦିଆଯାଉ ।

Digitized by srujanika@gmail.com

ପ୍ର—ମାନ୍ୟବର ଶ୍ରୀ ବ୍ରଜସୁନ୍ଦର ଦାସ
ଅ—ବାବୁ ଲକ୍ଷ୍ମୀଧର ମହାନ୍ତି
ସ—ବାବୁ ରାଧାକୃଷ୍ଣ ବସୁ ଏମ୍, ଏ

ଏକାଦଶ ନିର୍ଦ୍ଧାରଣ ।

ବହାର ଓଡ଼ିଶା ଅନ୍ତର୍ଭୁକ୍ତ ସିଂହଭୂମ, ମଧ୍ୟପ୍ରଦେଶ ଅନ୍ତର୍ଗତ ଫୁଲଝର, ଚନ୍ଦ୍ରପୁର, ପଦ୍ମପୁର ପ୍ରଭୃତି ଓଡ଼ିଆ ଅଞ୍ଚଳରେ ଓଡ଼ିଆ ଦେଶୀୟଭାଷାରୂପେ ଗୃହୀତ ହେବା ଏବଂ ଓଡ଼ିଆ ଶିକ୍ଷାବିସ୍ତାର ନିମନ୍ତେ ବହୁଳ ବ୍ୟବସ୍ଥା ହେବାର ପ୍ରୟୋଜନୀୟତା ଏହି ସମ୍ମିଳନୀ ଉପଲବ୍ଧି କରନ୍ତି ।

ପ୍ର—କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ
ଅ—ମାନ୍ୟବର ବାବୁ ଗୋପବନ୍ଧୁ ଦାସ
ସ—ବାବୁ ଗୋକୁଳଚନ୍ଦ୍ର ଦାସ
,,—ବାବୁ ଜଗନ୍ନାଥ ମହାନ୍ତି
,,—ବାବୁ ସୂର୍ଯ୍ୟନାରାୟଣ ପଟ୍ଟନାୟକ

ଦ୍ୱାଦଶ ନିର୍ଦ୍ଧାରଣ ।

ସମ୍ମିଳନୀ ପକ୍ଷରୁ ପ୍ରକାଶିତ ଓଡ଼ିଆ ସମ୍ବାଦ ଇଂରାଜୀ ପତ୍ରିକାର ପରିଚାଳନ ସର୍ବାଙ୍ଗ ବହିତ ବନ୍ଦୋବସ୍ତ କରାଯାଉ ଏବଂ ସମ୍ମିଳନୀ ପକ୍ଷରୁ ମେସୋପଟାମିଆକୁ ପଠାଯାଇଥିବା ଡାକ୍ତରଙ୍କ ବ୍ୟୟ ବହନ କରିବା ସକାଶ ଅର୍ଥ ସଂଗୃହୀତ ହେଉ ।

ପ୍ର—ରାଜାସାହେବ ମଧୁପୁର
ଅ—ରାୟବାହାଦୁର ସୁଦାମଚରଣ ନାୟକ
ସ—ବାବୁ ପୀତବାସ ପଟ୍ଟନାୟକ
,,—ବାବୁ କୃପାସିନ୍ଧୁ ମିଶ୍ର
,,—ବାବୁ ଲକ୍ଷ୍ମୀଧର ମହାନ୍ତି

ତ୍ରୟୋଦଶ ନିର୍ଦ୍ଧାରଣ ।

ବଣାଖାପତ୍ତନ ଜିଲ୍ଲାସ୍ଥିତ କରଣମାନେ ଓଡ଼ିଆ ହୋଇଥିଲେ ହେଁ ସେଠା ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷମାନେ ସେମାନଙ୍କୁ ଓଡ଼ିଆ ବୋଲି ଗ୍ରହଣ କରୁ ନ ଥିବା ଅତି ଶୋଚନୀୟ ବିଷୟ ବୋଲି ଏହି ସମ୍ମିଳନୀ ଉପଲବ୍ଧି କରନ୍ତି ।

ପ୍ର—ସଭାପତି

ଚତୁର୍ଦ୍ଦଶ ନିର୍ଦ୍ଧାରଣ ।

ଉତ୍କଳସମ୍ମିଳନୀର କାର୍ଯ୍ୟନିର୍ବାହକ ସମିତି ଓ ଓଡ଼ିଶାରେ ବହୁକାଳ ପୁରୁଷାନୁକ୍ରମେ ବାସ କରୁଥିବା ( Domiciled ) ବଙ୍ଗାଳୀମାନଙ୍କ ସଭାର ଯଥାକ୍ରମେ ୧୮ । ୩ । ୧୮ ଓ ୨୦ । ୩ । ୧୮ ତାରିଖମାନଙ୍କରେ ହୋଇଥିବା ଅଧିବେଶନମାନଙ୍କରେ ଉତ୍କଳସମ୍ମିଳନୀ ସହିତ ଉପରୋକ୍ତ ବଙ୍ଗାଳୀମାନଙ୍କ ସଭାର ଯେଉଁ ସମ୍ବନ୍ଧ ନିର୍ଦ୍ଧାରିତ ହୋଇଅଛି ତାହା ଏହି ସମ୍ମିଳନୀ ଅନୁମୋଦନ

Digitized by srujanika@gmail.com

କରୁଅଛନ୍ତି । ଯେଉଁ ବଙ୍ଗାଳୀମାନେ ପୁରୁଷାନୁକ୍ରମେ ଓଡ଼ିଶାରେ ବାସ କରି ଆସୁଅଛନ୍ତି ଏବଂ ଯେଉଁମାନଙ୍କର ଓଡ଼ିଶା ବାହାରେ ଗୃହ ( home ) ନାହିଁ— ଏବଂ ଓଡ଼ିଆ ବାସିମାନଙ୍କ ( indigenous population ) ସହିତ ସର୍ବତୋଭାବେ ଅଙ୍ଗୀଭୂତ ହୋଇଅଛନ୍ତି (become part and parcel of) ସେମାନେ ଉଭୟ ସମାଜର ଉନ୍ନତି ସାଧନ ନିମନ୍ତେ ଓଡ଼ିଆଙ୍କ ସହିତ ସହଯୋଗରେ କାର୍ଯ୍ୟ କରିବେ ଏହା ସମ୍ମିଳନୀ ସ୍ଥିର କରୁଅଛନ୍ତି ।

ପ୍ର—ମାନ୍ୟବର ମିଃ ମଧୁସୂଦନ ଦାସ

ଅ—ବାବୁ ଗୋବିନ୍ଦପ୍ରସାଦ ଘୋଷ

ପଞ୍ଚଦଶ ନିର୍ଦ୍ଧାରଣ ।

ସ୍ୱେଚ୍ଛା ସେବକମାନଙ୍କୁ ଧନ୍ୟବାଦ ।

ପ୍ର—ସଭାପତି

୧ ମ ନିର୍ଦ୍ଧାରଣ

ଟିକାଲୀର ଯୁବରାଜ ମହୋଦୟ ୧ମ ପ୍ରସ୍ତାବଟି ଅବଗତ କରନ୍ତେ ନିମ୍ନଲିଖିତ ମହୋଦୟମାନେ ତାହା ଯଥାକ୍ରମେ ଅନୁମୋଦନ ଓ ସମର୍ଥନ କରିବାକୁ ଲାଗିଲେ ।

ଅନୁମୋଦକ ଶ୍ରୀଯୁକ୍ତ ମହନ୍ତ ମହାରାଜ-ଝାଞ୍ଜପିଟମଠ-ପୁରୀ କହିଲେ :—

ଭଦ୍ରମାନେ,

ମୁଁ ଗତବର୍ଷ ସମ୍ମିଳନୀରେ ଏ ପ୍ରସ୍ତାବ ଅବଗତ କରିଥିଲି; ମାତ୍ର ବୋଧହୁଏ ମୋର ପ୍ରାର୍ଥନା ଈଶ୍ୱରଙ୍କ ନିକଟରେ ପହଞ୍ଚିପାରି ନାହିଁ । ତାହା ହୋଇଥିଲେ ଏ ଯୁଦ୍ଧ ଆଜଯାଏ ଲାଗି ରହି ନ ଥାନ୍ତା । ଏ ଯୁଦ୍ଧରେ ସମୁଦାୟ ଜଗତ ତାହିଁକି ଓଡ଼ିଶା ମଧ୍ୟ କ୍ଷତଗ୍ରସ୍ତ ହୋଇଅଛି । ସତ୍ୟ ଓ ନ୍ୟାୟର ମର୍ଯ୍ୟାଦା ରକ୍ଷାଲାଗି ଏ ଯୁଦ୍ଧ ଆରମ୍ଭ ହୋଇଅଛି । ଯେଉଁପକ୍ଷ ନ୍ୟାୟର ଟେକ ରଖିବାକୁ ଦଣ୍ଡାୟମାନ ସେ ପକ୍ଷ ଆମ୍ଭମାନଙ୍କର ସମ୍ରାଟ । ଈଶ୍ୱର ଶାନ୍ତିବାରି ସେଚନ କରି ଶୀଘ୍ର ଏ ଯୁଦ୍ଧ ନିବାରଣ କରନ୍ତୁ । ସମ୍ମିଳନୀ ଏ ଯୁଦ୍ଧସମୟରେ ଉତ୍କଳୀୟମାନଙ୍କର ରାଜଭକ୍ତି ଅକ୍ଷୁଣ୍ଣ ଥିବା ଲିପିବଦ୍ଧ କରୁଅଛନ୍ତି । ଓଡ଼ିଆମାନେ ଚିରକାଳ ରାଜଭକ୍ତ; ଓଡ଼ିଆଙ୍କର ଯେତେବେଳେ କୌଣସି ଗୁହାରି କରିବାର ଦରକାର ପଡ଼ୁଅଛି, ସେତେବେଳେ ସେମାନେ ଅନୁନୟ କରୁଅଛନ୍ତି । ଅନ୍ୟମାନଙ୍କ ଅନୁକରଣରେ ରାଜଦ୍ରୋହୀ ହୋଇନାହାନ୍ତି; ଆପଣମାନେ ସମସ୍ତେ ଈଶ୍ୱର ଉପାସନା କରନ୍ତି । ସେହି ଉପାସନା ବେଳେ ପ୍ରତ୍ୟେକେ କିଛିକାଳ ଈଶ୍ୱରଙ୍କୁ ଏ ଯୁଦ୍ଧରେ ସମ୍ରାଟଙ୍କ ଜୟ ଲାଗି ପ୍ରାର୍ଥନା କରିବେ ।

ସମର୍ଥକ ଶ୍ରୀଯୁକ୍ତ ବାବୁ ଗୋବିନ୍ଦପ୍ରସାଦ ଘୋଷ କହିଲେ :—

ଭଦ୍ରମାନେ,

ଏ ନିର୍ଦ୍ଧାରଣ ଆବଶ୍ୟକ, କାରଣ ଯୁଦ୍ଧ ଅଦ୍ୟାପି ଲାଗି ରହିଅଛି । ଏହି ଯୁଦ୍ଧ ଯୋଗେଁ [illegible] ଲବଣର ଅଭାବ ଘଟିଅଛି, ସେଥିଯୋଗେ ସମଗ୍ର ଉତ୍କଳର କ୍ଷତି ହୋଇଅଛି । ଉତ୍କଳ ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଅନ୍ୟାନ୍ୟ ବିଷୟରେ ପଶ୍ଚାତ୍-

Digitized by srujanika@gmail.com

ପଦ ହେଲେ ମଧ୍ୟ ରାଜଭକ୍ତି ଦେଖାଇବାରେ ପଶ୍ଚାତ୍‌ପଦ ନୁହେଁ, । ଏ ଯୁଦ୍ଧରେ ଆମ୍ଭମାନଙ୍କର ରାଜଭକ୍ତି ଦେଖାଇବା ଦରକାର, କାରଣ ତାହା ନ ହେଲେ ଆମ୍ଭେମାନେ ରାଜନୈତିକ ଅଧିକାର ଆଶା କରି ପାରିବୁ ନାହିଁ । ଯେଉଁମାନେ ଭାରତର ବିଭିନ୍ନ ଅଞ୍ଚଳରୁ ଯୁଦ୍ଧ ସକାଶେ ଯାଇ ଥିଲେ, ସେଥିର ଫଳରେ ସଚିବ ସଭା ଆଶ୍ୱାସ ଦେଇଅଛନ୍ତି—'ଭାରତ ଯୁଦ୍ଧରେ ରକ୍ତପାତ କଲେ ସେ ତାହାର ନ୍ୟାଯ୍ୟ ରାଜନୈତିକ ଅଧିକାର ନିଶ୍ଚୟ ପାଇବ । ଅମ୍ଭମାନଙ୍କର ସମ୍ରାଟ୍ ନ୍ୟାୟର ଟେକ ଲାଗି ଯୁଦ୍ଧରେ ଦଣ୍ଡାୟମାନ । ଜର୍ମାନଦେଶରୁ ସନ୍ଧିପ୍ରସ୍ତାବ ଉଠୁଥିଲେ ମଧ୍ୟ ଆମ୍ଭମାନଙ୍କ ସମ୍ରାଟ୍ ଗ୍ରହଣ କରୁ ନାହାନ୍ତି, କାରଣ ଜର୍ମାନୀର ରାଜ୍ୟଲିପ୍ସା ସମୂଳେ ଉତ୍ପାଟିତ ହେବା ଦରକାର" ।

ଦ୍ୱିତୀୟ ସମର୍ଥକ—ସେଖ ମନସୁର ବି, ଏ ଲ୍, କହିଲେ;—
ସଭାପତି ମହୋଦୟ ଓ ଭାଇମାନେ,

"ପ୍ରସ୍ତାବଟି ଦୁଇଭାଗରେ ବିଭକ୍ତ । ଶାନ୍ତିରେ କାଳଯାପନ କରୁଥିବାରୁ ଭାରତ ତଥା ଉତ୍କଳ ଇଂରାଜରାଜାଙ୍କଠାରେ ବଡ଼ କୃତଜ୍ଞ । ଅତଃ—ଅମ୍ଭେମାନେ ସମସ୍ତେ ମିଶି ଇଂରାଜରାଜାଙ୍କ ଜୟ ସକାଶେ ଈଶ୍ୱରଙ୍କୁ ପ୍ରାର୍ଥନା କରିବା କାହିଁକି ? ଇଂରାଜ ଆମ ରାଜା, ଆମର ଉପକାରୀ । ଇଂରାଜଜାତି ମାନବ ଜାତିର ନ୍ୟାୟର ଟେକ ରଖିବା ସକାଶେ ଯୁଦ୍ଧରେ ପ୍ରବୃତ୍ତ । ପ୍ରଥମେ ଯୁଦ୍ଧ ହେଲାବେଳେ ଜର୍ମାନ ସହିତ ଫରାସୀ ଜାତିର ଯୁଦ୍ଧ ହୁଏ; ଜର୍ମାନମାନେ ଫ୍ରାନ୍ସକୁ ଆସିବା ଲାଗି ବେଲଜିୟମ ରାଜାଙ୍କୁ ବାଟ ମାଗିଲେ—ଏଇଟା ଜର୍ମାନ ପକ୍ଷରେ ବଡ଼ ଅନ୍ୟାୟ କଥା—ଇଂରାଜମାନେ ଜର୍ମାନର ବେଲଜିୟମ ପ୍ରତି ଅନ୍ୟାୟ ଆଚରଣ ଦେଖି ଯୁଦ୍ଧ ଘୋଷଣା କଲେ । ସୁତରାଂ ନ୍ୟାୟର ଟେକ ରଖିବା ସକାଶେ ପ୍ରତ୍ୟେକ ଧର୍ମର ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବା ଉଚିତ । ହିନ୍ଦୁମାନେ ଦେବମନ୍ଦିରରେ, ମୁସଲମାନମାନେ ମସଜିଦରେ, ଖ୍ରୀଷ୍ଟିଆନମାନେ ଗିର୍ଜାରେ—ଏହିପରି ସମସ୍ତେ ପ୍ରାର୍ଥନା କରନ୍ତୁ—ଏଠାରେ ମିଳିତ ଭାଇମାନେ ଇଂରାଜଜାତିର ଜୟ ସକାଶେ ପ୍ରାର୍ଥନା କରନ୍ତୁ—ଏ ପ୍ରାର୍ଥନା ଈଶ୍ୱର ଅବଶ୍ୟ ଶୁଣିବେ ।"

ତୃତୀୟ ସମର୍ଥକ ବାଲେଶ୍ୱର ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ର କହିଲେ :—
ଭାଇମାନେ,

ଏ ଯୁଦ୍ଧକୁ ଜର୍ମାନ ଯୁଦ୍ଧ ବୋଲି ସମସ୍ତେ ଜାଣନ୍ତି, ଏ ଯୁଦ୍ଧ ଚାରିବର୍ଷ ହେଲା ଲାଗିଲା, ଆମ୍ଭମାନଙ୍କର ଆବଶ୍ୟକୀୟ ଦାନା ଦନା ଏ ଯୁଦ୍ଧ ହେତୁରୁ ଅଭାବ ହେଲା । କେତେକ ହାଟ ଲୁଟି ହେଲା, ଲକ୍ଷ ଲକ୍ଷ ଲୋକ ମଲେ, କେତେଘର ମାଟି ଛଡ଼ା ହୋଇ ଶୂନ୍ୟ ହୋଇଗଲା, ସେ ସବୁ ବର୍ଣ୍ଣନାତୀତ, ବେଲଜିୟମ ଏବଂ ଅନ୍ୟାନ୍ୟ ଯେଉଁଠାରେ ଯୁଦ୍ଧ ହୋଇଥିଲା ବା ହେଉଅଛି, ସେ କଥା ଶୁଣିଲେ ଜାଣିବେ—ସେଠାରେ ସମସ୍ତ ଛାରଖାର ହୋଇଯାଇଛି । ପୃଥିବୀର ସମସ୍ତ ରାଜା ଯୁଦ୍ଧ କରୁଅଛନ୍ତି, ମାତ୍ର ଜର୍ମାନ ଯୁଦ୍ଧ ବୋଲି କୁହାଯାଉଛି କାହିଁକି ? ଏ ଯୁଦ୍ଧରେ ଜର୍ମାନର ବଳ ଅଧିକ ଦେଖା ହେଉଅଛି, ସଂକ୍ଷେପରେ କହେ ।—

Digitized by srujanika@gmail.com

'ବିଦ୍ୟାବିବାଦାୟ ଧନଂ ମଦାୟ
ଶକ୍ତି ପରେଷାଂ ପରପୀଡ଼ନାୟ
ଖଳସ୍ୟ ସାଧୋଃ ବିପରୀତ ମେତତ୍
ଜ୍ଞାନାୟ ଦାନାୟ ଚ ରକ୍ଷଣାୟ'

ଯେଉଁଲୋକ ଦୁଷ୍ଟ ତାହାର ଶକ୍ତିଥିଲେ ପରପୀଡ଼ନକରେ । ଏପରି ଖଳଜାତ ଜର୍ମାନ ସମଗ୍ରପୃଥିବୀକୁ ଯେଉଁ ପୀଡାଗ୍ରସ୍ତ କରିଅଛି, ଯେଉଁ ପୀଡ଼ା ଦେଲାଣି, ଏ ଅନ୍ୟାୟ ବ୍ରିଟିସ ଜାତି ଉପଲବ୍ଧି କରିଥିବାରୁ ତାଙ୍କୁ ଆମ୍ଭେମାନେ ଭକ୍ତିକରୁଁ । ଉତ୍କଳସମ୍ମିଳନୀ ମଧ୍ୟ ଏହା ଉପଲବ୍ଧି କରି ଜଣେ ଡ଼ାକ୍ତର ଯୁଦ୍ଧକୁ ପଠାଇ ଅଛନ୍ତି । ମଧୁବାବୁ ଦୁଇହଜାର ଟଙ୍କା ଦେଇଥିଲେ, ସେ ମଧ୍ୟ war-loan fund ରେ ପ୍ରଜାଙ୍କ ସାହାଯ୍ୟ ଲାଗି ଦୁଇହଜାର ଟଙ୍କା ଦେଇଅଛନ୍ତି । ଆପଣମାନେ ଆଜ ଏହି ନ୍ୟାୟର ଟେକ ସଦାଶିବ ଈଶ୍ୱରଙ୍କୁ ସମସ୍ୱରେ ପ୍ରାର୍ଥନା କରନ୍ତୁ—
'ଆମ୍ଭମାନଙ୍କର ରାଜା ଜୟୀ ହେଉନ୍ତୁ' ।

ପ୍ରସ୍ତାବଟି ସର୍ବସମ୍ମତି କ୍ରମେ ଗୃହୀତ ହେଲା ।

୬ଷ୍ଠ ନିର୍ଦ୍ଧାରଣ ।

ମାନ୍ୟବର ମିଷ୍ଟର ମଧୁସୂଦନ ଦାସ ସି, ଆଇ, ଇ, ଏ ପ୍ରସ୍ତାବକୁ ଉପସ୍ଥିତ କରି କହିଲେ :—

ସମ୍ମାନିତ ସହୋଦରଗଣ, ଭାଇ ଓ ଭଉଣୀମାନେ,

ବୋଧହୁଏ ଆପଣମାନେ ସମସ୍ତେ ଗୌରୀଶଙ୍କରଙ୍କ ନାମ ଶୁଣି ଅଛନ୍ତି । ଯେଉଁଠାରେ ଲୋକେ ଓଡ଼ିଆ ଭାଷା କହନ୍ତି, କିମ୍ବା ଓଡ଼ିଆ ପୁସ୍ତକ ପାଠକରନ୍ତି, ସେଠାରେ ଗୌରୀଶଙ୍କରଙ୍କ ନାମ ଜଣାଅଛି । ରାୟବାହାଦୁର ଉପାଧି ସେ ପାଇଥିଲେ । ମୁଁ କିନ୍ତୁ ରାୟବାହାଦୁର ଗୌରୀଶଙ୍କର ବାବୁ ଗୌରୀଶଙ୍କର ଇତ୍ୟାଦି କଥା କହିବାକୁ ଇଚ୍ଛା କରେ ନାହିଁ । ମନୁଷ୍ୟର ଆତ୍ମା ଯେତେବେଳେ ତାହାର ମୃଣ୍ମୟ ପିଣ୍ଡରେ ପ୍ରବେଶ କରେ, ସେତେବେଳେ କିଏ କରେ ? ସେହି ସର୍ବଶକ୍ତିମାନ ଈଶ୍ୱରଙ୍କ ଅନନ୍ତସତ୍ତାର ଅଂଶ ପ୍ରବେଶ କରେ । ସେହି ମୃଣ୍ମୟ ପିଣ୍ଡର ନାମ ରାୟ ବାହାଦୁର, ବାବୁ, ମିଷ୍ଟର ଇତ୍ୟାଦି ହୁଏ । କିନ୍ତୁ ଆତ୍ମା ଯେତେବେଳେ ପ୍ରବେଶ କରେ କିମ୍ବା ମୃଣ୍ମୟପିଣ୍ଡ ଛାଡ଼ି ପଳାଏ, ସେତେବେଳେ ରାୟ ବାହାଦୁର, ବାବୁ ଇତ୍ୟାଦି ଉପାଧି ସବୁ ଭୁଲି କରି ପିଣ୍ଡସହିତ ପକାଇଦେଇ ପଳାଏ । ଗୌରୀଶଙ୍କରଙ୍କ ଆତ୍ମା ସ୍ୱର୍ଗରେ ଅଛି । ବର୍ତ୍ତମାନ ତାଙ୍କ ଆତ୍ମାଙ୍କୁ ମୁଁ ଆହ୍ୱାନ କରୁଅଛି । ତାଙ୍କୁ ରାୟ ବାହାଦୁର ଇତ୍ୟାଦି ସମ୍ବୋଧନରେ ଆହ୍ୱାନ କଲେ ସେହି ଆତ୍ମା ସେ ସବୁ ତୁଚ୍ଛ ଜ୍ଞାନ କରିବ ମାତ୍ର ।

ମନୁଷ୍ୟ ଜୀବନ୍ତ ଚକ୍ଷୁଦ୍ୱାରା ଆଗକୁ ଅନାଏ । ପଶ୍ଚାଦ୍‌ଭାଗରେ ତାର ଚକ୍ଷୁ ନାହିଁ । ଏହିହେତୁରୁ ପଶ୍ଚାତ୍ତରେ ଯାହା ହୋଇଗଲା ସେ ତାହା ଦେଖେ ନାହିଁ । ଗୋଟିଏ ଜାତି ପକ୍ଷରେ ମଧ୍ୟ ତଦ୍ରୂପ । ଯେତେବେଳେ ଗୋଟିଏ ଜାତି ଅଗ୍ରସର ହୋଇ ତାହାର

Digitized by srujanika@gmail.com

ସାଧାରଣତଃ ଅଗକୁ ବା ଭବିଷ୍ୟତ୍ ପ୍ରତି ଦୃଷ୍ଟି ପଡ଼େ । ପଶ୍ଚାଦ୍‌ଭାଗରେ ଗତ ଜୀବନରେ ବା ଅତୀତ ଇତିହାସରେ ତାହାର ଅବସ୍ଥା କିପରି ଥିଲା, ସେ ଦେଖିବାକୁ ଇଚ୍ଛା କରେନାହିଁ । ଶିଶୁ ସମ୍ମୁଖରେ ଅନେକ ଆଶା ଦେଖେ । ପଶ୍ଚାତ୍‌ରେ ଅର୍ଥାତ୍ ପୂର୍ବରେ ତାହାର ପିତା ମାତା କିପରି ଅବସ୍ଥାରେ ଥିଲେ, କେତେ ଦୁଃଖ କଷ୍ଟରେ ତାହାର ଲାଳନ ପାଳନ କରିଥିଲେ, ଏବେ ସବୁ ସେ ଭାବେ ନାହିଁ । କିନ୍ତୁ ଯେତେବେଳ ଯାଏ ଆମ୍ଭେମାନେ ଆମ୍ଭ ପିତା ମାତା ପୂର୍ବରେ କିପରି ଭାବରେ ଜୀବନ ଯାପନ କରିଥିଲେ ଏ ସମ୍ବନ୍ଧେ ନ ଭାବୁଁ, ସେମାନଙ୍କ କାର୍ଯ୍ୟଦ୍ୱାରା ସମାଜର, ଜାତିର କି ଉପକାର ହୋଇପାରେ ଜାଣିପାରୁ ନାହୁଁ । ଗୌରୀଶଙ୍କର ଉତ୍କଳରେ ପ୍ରଥମେ ସମ୍ବାଦପତ୍ର ପ୍ରକାଶ କଲେ । 'ଉତ୍କଳ ଦୀପିକା' ଉତ୍କଳର ଦୀପଟିଏ । ଏକ ସମୟରେ ମନୁଷ୍ୟଜାତି ଅସଭ୍ୟାବସ୍ଥାରେ ଥିଲା । ସୃଷ୍ଟିର ପ୍ରଥମ ଦିନ ଯେତେବେଳେ ସୂର୍ଯ୍ୟ ଅସ୍ତ ହେଲେ, ଅନ୍ଧକାର ପୃଥିବୀରେ ଘୋଟିଗଲା, ମନୁଷ୍ୟ ସେତେବେଳେ ଆତ୍ମରକ୍ଷା ପାଇଁ ବ୍ୟାକୁଳ ହେଲା । ସୂର୍ଯ୍ୟ ପୁନରପି ଉଦୟ ନ ହେଲେ ସେ କଣ କରିବ ବୋଲି ବ୍ୟାକୁଳ ହେଲା, ତେତେବେଳେ ମନୁଷ୍ୟ ନୈଶ କାର୍ଯ୍ୟରେ ଜାତିକୁ ସହାୟ ହେବାକୁ ଦୀପର ସୃଷ୍ଟି କଲା । ସେତେବେଳେ ଘୋରିଷରୁ ତେଲ ବାହାର କରି, କପାରେ ଦୁଇଖଣ୍ଡ ସଳିତା, କାଷ୍ଠ ସଂଘର୍ଷଣରେ ଅଗ୍ନି ଉତ୍ପାଦନ କରିବାକୁ ତାକୁ କେତେ କଷ୍ଟ ସହ୍ୟ କରିବାକୁ ପଡ଼ିଥିଲା । ବର୍ତ୍ତମାନ ଦୀପ ଜାଳିବା ଅତି ସହଜ । କିନ୍ତୁ ପ୍ରଥମରେ ଯାହାର ମସ୍ତିଷ୍କ ଦୀପ ଆବିଷ୍କାରରେ ନିୟୋଜିତ ହେଲା, ତାହାର କେତେ ଚେଷ୍ଟାର ଫଳ ଏହା ! ତେଣୁ ମାନବ ଜାତି ତାହାଠାରେ କୃତଜ୍ଞ ରହିବାକୁ ବାଧ ।

ଯେତେବେଳେ ମନୁଷ୍ୟ ଶିଶୁ ଅବସ୍ଥାରେ ଥିଲା, ଆତ୍ମ ରକ୍ଷା କରିବାର ଶକ୍ତି ତାର ନ ଥିଲା, ମାତା ତାହାକୁ ରକ୍ଷା କରିଥିଲେ । ଆମ୍ଭମାନଙ୍କର ଆତ୍ମରକ୍ଷାର ଶକ୍ତି ନଥିବା ସମୟରେ, ମାତା ଆମ୍ଭ ମାନଙ୍କୁ ରକ୍ଷା କରିଥିଲେ । ଏହା ସମସ୍ତେ ଯଦି ଭାବି ଥାଆନ୍ତେ, ଆଜି ଆଉ ଏଠାରେ ମାତୃ ପୂଜା ନିମନ୍ତେ ପ୍ରଚାର କରିବାକୁ ହୁଅନ୍ତା ନାହିଁ । ଗୌରୀଶଙ୍କର ପ୍ରଥମେ ଉତ୍କଳରେ କଣ କରିଥିଲେ କେହି ଭାବନ୍ତି ନାହିଁ ।

ମୁଁ ଓଡ଼ିଆମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ପାପୀ—ଉତ୍କଳ ମାତାଙ୍କର ନିକୃଷ୍ଟ ସନ୍ତାନ । ତାହାର କାରଣ ବୋଧ ହୁଏ ଯେ ମୁଁ ଓଡ଼ିଶାରେ ପ୍ରଥମେ ଏମ୍, ଏ, । ମୁଁ ପ୍ରଥମେ ଇଂରାଜୀ ଶିଖି ଯେଡ଼େ ନିକୃଷ୍ଟ ବୁଦ୍ଧି ହୋଇଛି, ସେ ହେତୁରୁ ମୁଁ ଉତ୍ତମ ରୂପେ ତାହା ବୁଝି ପାରୁଛି । ପ୍ରଥମ ବାଲ୍ୟାବସ୍ଥାରେ ମନୁଷ୍ୟ ଯେପରି ଅବସ୍ଥା ଭୋଗ କରେ, ତାହା ମୁଁ ଯେପରି ବର୍ତ୍ତମାନ ଅନୁଭବ କରୁଛି, ଆଉ କିଏ କରୁଥିବ କି ନାହିଁ ସନ୍ଦେହ ।

ବର୍ତ୍ତମାନର ସ୍ୱାଧୀନତା ପ୍ରବୃତ୍ତି ସତ୍ତ୍ୱେ ଏ ବିଂଶ ଶତାବ୍ଦୀର ସଭ୍ୟତା ଯୁଗରେ କୌଣସି ସାଧାରଣ କାର୍ଯ୍ୟ କଲେ ସରକାର, ପୋଲିସ ଯେପରି ବାଘପରି ଗିଳି ଦେବାକୁ ବସିଅଛନ୍ତି, ୫୦ ବର୍ଷତଳେ ସେମାନେ କଗର ହୋଇ ନ ଥିବେ, ଭାବନ୍ତୁ ।



Digitized by srujanika@gmail.com

ସେତେବେଳେ ଗୌରଶଙ୍କର କାର୍ଯ୍ୟ କ୍ଷେତ୍ରରେ କାଗଜର ଛଡ଼ା ହୋଇଥିଲେ । (କରତାଳି) ।

ତାଙ୍କଠାରେ ମୁଁ ଗୃହ ପାଳନ ଶିକ୍ଷା କରିଅଛି । ସମସ୍ତ ସମ୍ବନ୍ଧରେ କୌଣସି କାର୍ଯ୍ୟରେ ତାଙ୍କସହିତ ପରାମର୍ଶ କରେ । ମୁଁ ଯାହାଠାରୁ ଗୋଟିଏ କଥା ଶିଖିଅଛି, ତାଙ୍କୁ ଗୁରୁଜ୍ଞାନ କରୁଛି । ପିଲାଦିନେ ଅବଧାନଙ୍କଠାରେ ୧୦।୧୨ ଦିନ ପଢ଼ିଥିଲି । ସେଥିପାଇଁ ତାଙ୍କୁ ମୁଁ ୩୫ ବର୍ଷ ନିମନ୍ତେ ପେନ୍‌ସନ୍ ଦେଇଥିଲି । ମୁଁ ଗୌରିଶଙ୍କରଙ୍କଠାରେ ଅନନ୍ତ ଋଣରେ ଋଣୀ । ତାଙ୍କର ଯେଉଁ କର୍ତ୍ତବ୍ୟ ଜ୍ଞାନ ଥିଲା, ସେଥି ବଳରେ ସେ ସର୍ବଦା ନିର୍ଭୀକ ଭାବରେ କାର୍ଯ୍ୟ କରିଥିଲେ । ସେ ଯେତେବେଳେ ଟ ୩୦୲ ବେତନରେ ଥିଲେ, ସେତେବେଳେ କଲେକ୍ଟରଙ୍କୁ ମାନୁନଥିଲେ ।

କଂଗ୍ରେସକୁ ଓଡ଼ିଶାରୁ ପ୍ରତିନିଧିରୂପେ ଯେତେବେଳେ ମୁଁ ଓ ଗୌରିଶଙ୍କର ଯିବାକୁ ସ୍ଥିରକଲୁ, ସେତେବେଳେ ସରକାରୀ ଆଦେଶ ପ୍ରଚାର ହେଲା ଯେ ସରକାରୀ କର୍ମଚାରୀମାନେ କଂଗ୍ରେସକୁ ଯିବେ ନାହିଁ । ମୁଁ ସେତେବେଳେ ପଚାରିଥିଲି "ମାଷ୍ଟର ମହାଶୟ, ଆପଣ କଣ କରିବାକୁ ସ୍ଥିର କରିଛନ୍ତି ?" ସେ କହିଥିଲେ "କଣ କରିବି ? ଚାକିରୀ ପଛେ ଯାଉ, ଦେଶ ସକାଶେ ମୁଁ ଅବଶ୍ୟ କଂଗ୍ରେସକୁ ଯିବି ?" (କରତାଳି) ଆଜି କେତେଜଣ ଓଡ଼ିଆ କର୍ମଚାରୀ ଦେଶ ସକାଶେ ସରକାରୀ ଚାକିରି ପରିତ୍ୟାଗ କରିବାକୁ ଅଗ୍ରସର ହେବେ ? ଯେଉଁଦିନ ସକାଶେ ହେଉ ମୁଁ ଗୌରିଶଙ୍କରଙ୍କର ଚରଣତଳେ ଶିକ୍ଷା କରିଛି । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରେ, ସେ ମୋତେ ଆଶୀର୍ବାଦ କରନ୍ତୁ; ଯେପରି ମୁଁ ତାଙ୍କପରି ନିର୍ଭୀକ ଭାବରେ କର୍ତ୍ତବ୍ୟ ସମ୍ପାଦନ କରିବି ( କରତାଳି)

ତାଙ୍କ ତିରୋଧାନରେ ଯେଉଁ କ୍ଷତି ହୋଇଅଛି, ତାହା ସ୍ମରଣ ରଖିବା ନିମନ୍ତେ ତାଙ୍କର ପ୍ରତିମୂର୍ତ୍ତି ସ୍ଥାପନ ବା ଅନ୍ୟରୂପ ବନ୍ଦୋବସ୍ତ କରିବା ନିମନ୍ତେ ଅନେକ କହନ୍ତି । କିନ୍ତୁ ଏହା ନିତାନ୍ତ ଭ୍ରମ । ଏହି ସବୁ ଦ୍ୱାରା କଣ ସ୍ମୃତିରକ୍ଷା ହୋଇପାରେ ? ଫଟୋ ଟାଏ ରଖି ସ୍ମୃତିରକ୍ଷା କରିବାକୁ କେହି କେହି କହନ୍ତି । ତାଙ୍କର ୧୪ ବର୍ଷ ବୟସର ଗୋଟିଏ ଫଟୋ ଅଛି । ଆଉ ଗୋଟିଏ ୬୦ ବର୍ଷ ବୟସର । କେଉଁଟି ରଖିବ ? ଏ ସବୁ କେବଳ ମୂର୍ଖତା, କେହି କେହି କହନ୍ତି ତାଙ୍କର ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିଦିଅ—ନାମ ରହିଯିବ । କଲିକତାରେ Harrington street ନାମରେ ଗୋଟିଏ ସଡ଼କ ଅଛି, କିନ୍ତୁ ଯାଇ ପଚାର, କେଉଁ ହେରିଙ୍ଗଟନଙ୍କ ନାମରେ ଏହାର ନାମ ଦିଆଯାଇଅଛି, କେହି କହିପାରିବେ ନାହିଁ । ସ୍ମୃତି ରହିଲା ଅଉ କେଉଁଠାରେ ? ସେତ ଦୂରର କଥା । ଆମର ଏ ଯେଉଁ ଜଗନ୍ନାଥ ଦେଉଳ ଅଛି, ତାର ନିର୍ମାତା ସମ୍ବନ୍ଧରେ କିଏ କହୁଛି ଅମୁକ ରାଜାଙ୍କ, ଅନ୍ୟଜଣେ କହୁଛି ଅମୁକ ଲୋକଙ୍କ । ଏସବୁ ପ୍ରକୃତ ସ୍ମୃତିରକ୍ଷା କରିପାରିବ ନାହିଁ ।

ମୋର ଶିକ୍ଷାଦ୍ୱାରା ଯଦି ଅନ୍ୟ ଜଣଙ୍କର ଉପକାର ହେଲା, ଯଦି ଗୋରିଶଙ୍କର ଆତ୍ମା ଆମ୍ଭମାନଙ୍କ ଆତ୍ମା ଉପରେ କିଛି ଚିହ୍ନ ରଖିପାରେ, ତେବେ ତାଙ୍କର

Digitized by srujanika@gmail.com

ସ୍ମୃତି ଅକ୍ଷୁର୍ଣ୍ଣ ରହିଲା ବୋଲି ଗ୍ଲାନ କରିବାକୁ ହେବ । ତାହା କି.ଚିନ୍ତ ରଖିପାରେ ? ଓଡ଼ିଆଙ୍କର କାର୍ଯ୍ୟକ୍ଷେତ୍ରରେ ତାଙ୍କର ଅମ୍ବା ଯେପରି ବିକଶିତ ହୋଇଥିଲା, ସେହି ଅମ୍ବାର କାର୍ଯ୍ୟମାନ ଯଦି କୌଣସି ପ୍ରକାର କରଯାଇପାରେ, ତେବେ ତାଙ୍କର ସ୍ମୃତି ରହିବ । ଏହିପରି ଅମ୍ବା ଉପରେ ଉପକାରର ଉପାୟ କରଯିବା ଉଚିତ । (କରତାଳି)

ଅନୁମୋଦକ ରାୟ ସୁଦାମଚନ୍ଦ୍ର ନାୟକ ବାହାଦୁର କହିଲେ—

ସଭାପତି ମହାଶୟ, ଭାଇ ଓ ଭଉଣୀମାନେ,

ଗୌରୀଶଙ୍କରଙ୍କ ନିଜର ସ୍ମୃତି ନିଜେ ରଖି ଯାଇଅଛନ୍ତି । ସେ ସ୍ମୃତି ଚିରକାଳ ରହିବ । ତାଙ୍କ କର୍ତ୍ତବ୍ୟ ଜ୍ଞାନ ସମ୍ବନ୍ଧେ ମୁଁ କିଛି କହିବି, ତାଙ୍କର ଶେଷ ଜୀବନରେ ମୋ ସହିତ ଖୁବ୍ ଘନିଷ୍ଠତା ଜନ୍ମିଥିଲା । କାର୍ଯ୍ୟ କ୍ଷେତ୍ରରେ ମୁଁ ଯାହାଙ୍କୁ ଗୁରୁ ମନେ କରୁଥାଏ, ତାଙ୍କର ପଦରେ ମୁଁ ପରେ ଅଭିଷିକ୍ତ ହୁଏ— ଉଦାହରଣ ସ୍ୱରୂପ ମୁଁ ଫକୀରମୋହନ, ନନ୍ଦକିଶୋର ପ୍ରଭୃତିଙ୍କ ସହକାରୀ ଥିଲି—ପରେ ତାଙ୍କ ପଦ ଲାଭ କଲି, ଗୌରୀଶଙ୍କରଙ୍କୁ ଗୁରୁ ମଣୁଥିଲି—ପରେ ତାଙ୍କର ପଦ ଲାଭ କରିବି ବୋଲି କଳ୍ପନା ସୁଦ୍ଧା କରି ନଥିଲି । ସେ ଶେଷ ଜୀବନ ପର୍ଯ୍ୟନ୍ତ କଷ୍ଟ ସହିଷ୍ଣୁ, କର୍ତ୍ତବ୍ୟପରାୟଣ ଥିଲେ । " କୌଣସି କାର୍ଯ୍ୟ କରି ପାରିବେ ନାହିଁ । " ଏ ପରାଜୟ ସ୍ୱୀକାର କରିବା ତାଙ୍କ ସ୍ୱଭାବ ବିରୁଦ୍ଧ ଥିଲା । ତାଙ୍କର ଲେଖିବା ପ୍ରଣାଳୀ ଏପରି ଥିଲା ଯେ, ଖଣ୍ଡିଏ କାଗଜ ଘେନି ଲେଖିବାକୁ ବସିଲେ, ସେ ଖଣ୍ଡିକରେ ବିଷୟଟି ପୂର୍ଣ୍ଣ ଭାବରେ ଆଲୋଚନା କରି ଲେଖୁଥିଲେ—ସେ ମାପ ମୁତାବକ ଲେଖୁଥିଲେ ବୋଲି କୁହା ଯାଇ ପାରେ । ଗୌରୀଶଙ୍କର ସଂସାରର ଗୁରୁ । ଯେତେଦିନ ଯାଏ ଓଡ଼ିଆ ଭାଷା ରହିଥିବ, ତାଙ୍କ ସ୍ମୃତି ସେତେଦିନ ରହିଥିବ । ଆଜି ଓଡ଼ିଆମାନଙ୍କ ସହିତ ସ୍ଥାୟୀ ବଙ୍ଗାଳୀମାନେ ମିଳିତ ହୋଇଥିବା ଗୌରୀଶଙ୍କରଙ୍କ ଅମ୍ବାର ପ୍ରଭାବ ଓ ସ୍ମୃତିରକ୍ଷାର ଅନ୍ୟତମ ନିଦର୍ଶନ ।

ସମର୍ଥକ ଶ୍ରୀ ଯୁକ୍ତ ବାବୁ ରାମକୃଷ୍ଣ ପଟ୍ଟନାୟକ କହିଲେ—

ଶକ୍ତି ଅନନ୍ତ, ଈଶ୍ୱର ସୃଷ୍ଟିରେ ଅନନ୍ତ ଶକ୍ତିର ଅଭାବ ନାହିଁ କେହି କିଛି କରି, କେହି ସ୍ପଷ୍ଟ ଭାବରେ ପ୍ରତୀୟମାନ ହେଉଅଛି । ଶକ୍ତି ସମ୍ପୂର୍ଣ୍ଣ ନଷ୍ଟ ହୁଏ ନାହିଁ, ଯେତେବେଳେ ଉତ୍କଳ ପ୍ରଦେଶ ଖଣ୍ଡ ବିଖଣ୍ଡ ହୋଇ ପୁରୀ, କଟକ, ବାଲେଶ୍ୱରରେ ପରିଣତ ହେଲା, ଯେତେବେଳେ ବଙ୍ଗାଗତ ବଙ୍ଗୀୟ ସମ୍ପ୍ରଦାୟ ଓଡ଼ିଆଙ୍କୁ 'ବେବେହେରା' ଆଖ୍ୟା ଦେଇ ଓଡ଼ିଆ ଭାଷାର ବିନାଶ ସାଧନରେ ସଯତ୍ନ ଥିଲେ ସେତେବେଳେ ଗୌରୀଶଙ୍କର ସେଥିର ରକ୍ଷାକର୍ତ୍ତା । ଯେତେବେଳେ ଓଡ଼ିଆ ଭାଷା ବିନଷ୍ଟ ହେବାକୁ ବସିଥିଲା, ସେତେବେଳେ ଫକୀରମୋହନ, ବିଚିତ୍ରାନନ୍ଦ ପ୍ରଭୃତିଙ୍କ ସମର ସଜ୍ଜାରେ ଗୌରୀଶଙ୍କର ଯୋଗ ଦେଇଥିଲେ । ଆମ୍ଭେମାନେ ପିଲାବେଳେ, ଯେତେବେଳେ ମଫସଲରେ ପଢୁଥିଲୁ, ଉତ୍କଳଦୀପିକା ପାଇଁ ଗୌରୀଶଙ୍କରଙ୍କ ନାମ ଜାଣିଥିଲୁ । କଟକ ଆସି ସବିଶେଷ ବୃତ୍ତାନ୍ତ ଜାଣିଲୁ । ଗୌରୀଶଙ୍କରଙ୍କ ଦୃଢ଼ ପ୍ରତିଜ୍ଞା

Digitized by srujanika@gmail.com

ହୋଇଥିଲେ, ମୁଁ ଯେଉଁ ଦେଶରେ ଅଛି, ସେ ଦେଶର ଭାଷାର ଉତ୍କର୍ଷ ସାଧନ କରିବ । କେବଳ ଭାଷା ନୁହେଁ, ଅନ୍ୟାନ୍ୟ କ୍ଷେତ୍ରରେ ସେ ମଧ୍ୟ କୃତିତ୍ୱ ଦେଖାଇ ଅଛନ୍ତି । ସେ ଯେତେବେଳେ ସଙ୍ଗ୍ରାମ ସ୍ଥଳୀରେ ଯୋଗ ଦେବାକୁ ଯାନ୍ତି, ସେତେବେଳେ ସେ ଅନଶ୍ୱର ଭୂଷଣ । ତାଙ୍କର ଦରିଦ୍ର ବିଦ୍ୟାର୍ଥୀମାନଙ୍କୁ ସାହାଯ୍ୟ ଦାନ ଅତ୍ୟନ୍ତ ପ୍ରଶଂସନୀୟ । ଅମର ଟାଉନହଲ, ମଫସଲର ସ୍କୁଲ ପ୍ରଭୃତି ତାଙ୍କର ଉଦାର ହୃଦୟର ଜ୍ୱଳନ୍ତ ଉଦାହରଣ । ଗୁଣିକୁ ଚିହ୍ନେ କିଏ ? ଗୁଣୀ ଚିହ୍ନେ । ଆମ୍ଭମାନଙ୍କର ଗୁଣ ଗ୍ରହଣର ଶକ୍ତି ନାହିଁ । ଯେଉଁ ଲୋକ ଯେଉଁ ପରିମାଣରେ ଗୁଣୀ ତାହାର ଗୁଣ ଚିହ୍ନିବାକୁ ସେହି ପରିମାଣରେ ଗୁଣୀ ନ ହେଲେ ତାହାର ଗୁଣ ଚିହ୍ନି ପାରିବ ନାହିଁ । ସେ ଯେପରି ଗୁଣବାନ ଓ କର୍ମିଷ୍ଠ, ସେପରି ନ ହେଲେ ତାଙ୍କ ଗୁଣ ଅନୁଭବ କରି ଯାଇ ନ ପାରେ । ଜୀବାତ୍ମାର କଦାପି ଲୋପସାଧନ ହୁଏ ନାହିଁ । ଏକ ଶରୀରରୁ ଯାଇ ତାହା ଅନ୍ୟ ଶରୀରରେ ପ୍ରବେଶ କରି ଈଶ୍ୱରଦତ୍ତ ଉଦ୍ଦେଶ୍ୟ ସାଧନ କରେ, ବିବେକବାନ୍ ମନୁଷ୍ୟ ତାହା ଉପଲବ୍ଧି କରେ, ଅନ୍ୟ ପକ୍ଷରେ ତାହା ଅସମ୍ଭବ । ସେ ଏ ପୃଥିବୀରେ ଜନ୍ମ ହୋଇ ଈଶ୍ୱରାଦେଶ ପାଳନ କରି ଚାଲି ଯାଇ ଅଛନ୍ତି ।”

ଏ ପ୍ରସ୍ତାବ ସର୍ବ ସମ୍ମତି କ୍ରମେ ଗୃହୀତ ହେଲା ।

୧୦ । ଅଭ୍ୟର୍ଥନା ସଭାର ସମ୍ପାଦକ ବିଷୟ ନିର୍ବାଚନୀ ସମିତିର ସଭ୍ୟ-ମନୋନୀତ କରିବା ନିମନ୍ତେ ପ୍ରତିନିଧିମାନଙ୍କୁ ଅନୁରୋଧ କଲେ ଏବଂ ନିମ୍ନଲିଖିତ ପ୍ରକାରେ ସଭ୍ୟସଂଖ୍ୟା ଗୃହୀତ ହେଲା

କଟକ—୧୫
ପୁରୀ—୮
ବାଲେଶ୍ୱର—୬
ଗଡ଼ଜାତ—୩
ସମ୍ବଲପୁର—୩
ଗଞ୍ଜାମ—୮
ମେଦିନୀପୁର ଓ ସିଂହଭୂମ—୨

୧୧ । ତତ୍ପରେ ଯନ୍ତ୍ର ସାହାଯ୍ୟରେ ନିମ୍ନଲିଖିତ ସଙ୍ଗୀତଟି ଗାନ ହେଲା;—

ଜାତୀୟ ସଙ୍ଗୀତ ।

( ଗଲଣି ଗଲ କଥା ବୃତ୍ତରେ । )

ପୁଲକିତ ଚିତ୍ତ ଆଜ ହେ ସୋଦରେ ପୁଲକିତ ଚିତ୍ତ ଆଜ ।
ଏକମାତା କୋଳେ ସମାଗତ ଦେଖି ଉତ୍କଳ ସୁତସମାଜ । ଘୋଷା ।

ନବ ଜାଗରଣ ଉତ୍କଳ ସନ୍ତାନ ଧମନୀରେ ମାତୃସ୍ନେହ ।
ଚାଳିଦେଲା ବୋଲି ଭାଳିବାକୁ ଅହା ! କଣ୍ଟକିତ ହୁଏ ଦେହ । ୧ ।

ଅତୀତ ଗୌରବ ସୁମରଣ ପ୍ରତି ଅଦର ନାହିଁକି ଭାଇ ।
ଯାହା ଲାଗି ଅହା ଓଡ଼ିଆଙ୍କୁ କେହି ମାନବେ ଗଣନ୍ତି ନାହିଁ । ୨ ।

Digitized by srujanika@gmail.com

"ଜନନୀ ଜନମଭୂମି ସ୍ୱର୍ଗ" କଥା ଏହ ଦେଶ୍ତୁ ଜତପଜ ।
ଜୀବନେ ଦେଖାଇ, ଠେକାଇବା ଗ୍ଭଲ ଷିତରେ ଖାଉଚ ଜଳ । ୩ ।
ମଣ ନାହିଁ କେବେ ନଜଙ୍କୁ ସାମାନ୍ୟ, ଭୃଣଗୁଛ ଏକ ମେଳେ ।
ଜାଣିଥିବ ଭାଇ, କରପାରେ ବଣ ମତ୍ତ କସ୍ତୀବର ଉହଳେ । ୪ ।
ତେବେ ଆସ ମୋର ପ୍ରିୟ ସହୋଦର ଶୁମରୁ ବଶ୍ୱଜୀବନ ।
ଏକମନ ହୋଇ ସ୍ୱଦେଶହିତ ପାଇଁ ସମର୍ପି ଦେଖା ଜୀବନ । ୫ ।

ଏହୁଠାରେ ପ୍ରଥମ ଦବସର କାର୍ଯ୍ୟ ଶେଷ ହେଲା ।

## ଦ୍ୱିତୀୟ ଦିବସ ।

ମାର୍ଚ୍ଚ ତା ୩୧ ରଖ

ସକାଳ ଘ ୭୨ ଣ୍ଟା—ଅପରାହ୍ଣ ଘ ୧ ଣ୍ଟା

( କାର୍ଯ୍ୟ ନିର୍ଘଣ୍ଟ )

୧—ଭାରତଗୀତିକା
୨—ଉପକ୍ରମଣିକା ( ମାନ୍ୟବର ମଧୁସୂଦନଦାସ, ସି୦ ଆଇ୦ ଇ୦ )
୩—ମାନ୍ୟବର ବାବୁ ବ୍ରଜସୁନ୍ଦରଦାସ ବି୦ ଏ୦ ଙ୍କ ନିବେଦନ ।
୪—ପୁରସ୍କାର ବିତରଣ
୫—ନିର୍ଦ୍ଧାରଣମାନ
୬—ସଙ୍ଗୀତ ।

୧ । ପୂର୍ବୋଲ୍ଲିଖିତ ଭାରତଗୀତିକା ପୂର୍ବପରି ଗାନ ହୋଇଥିଲା ଏବଂ ଉପସ୍ଥିତ ସମସ୍ତ ସଭ୍ୟବୃନ୍ଦ ପୂର୍ବଦିବସପରି ଦଣ୍ଡାୟମାନ ହୋଇ ପବିତ୍ର ଚିତ୍ତରେ ତାହା ଶ୍ରବଣ କଲେ ।

ମାନ୍ୟବର ମି୦ ମଧୁସୂଦନ ଦାସ ସି୦ ଆଇ୦ ଇ୦ ନିମ୍ନଲିଖିତ ଉତ୍କଳଜନନୀଙ୍କ ଓ ଓଡ଼ିଆପୁଅଙ୍କ କର୍ତ୍ତବ୍ୟ, ପ୍ରକାଶ କଲେ ।

## ଉତ୍କଳଜନନୀଙ୍କ ମାତୃଣି ।

ଓଡ଼ିଆପୁଅଙ୍କ କର୍ତ୍ତବ୍ୟ ।

ମୋ ପୁଅମାନେ !

ତୁମ୍ଭମାନଙ୍କୁ ଦେଖିଲେ ମୋ ମନ କୁଣ୍ଢେ ବୋଠ ହୋଇଯାଏ । ଆନନ୍ଦରେ ମୁଁ ନିଜକୁ ଭୁଲିଯାଏ । ତୁମର ଆନନ୍ଦରେ ମୋର ଆନନ୍ଦ, ତୁମର ଦୁଃଖରେ ମୋର ଦୁଃଖ, ମୋ ଆଖିରେ ଧନୀ ଦୁଃଖୀ ସମାନ । ସାନପୁଅ ଚାଲିପାରେ ନାହିଁ ବୋଲି ମା ତାକୁ କାଖାଏ, ସେ ହାତରେ ଖାଇପାରେ ନାହିଁ ବୋଲି ମା ତାକୁ ସ୍ତନ ପାନ କରାଏ । ଯେଉଁ ପୁଅର ବଳ ନାହିଁ ତାହାପାଇଁ ମାର ବେଶି ଭାବନା । ତେଣେମେମ ନେ ସିନା ଦୁଃଖୀପୁଅଙ୍କ କଥା ବୁଝିଲ ନାହିଁ, ମୁଁ ତୁନିହୋଇ କେମନ୍ତ ରହିବ । ଯେଉଁମାନେ ଜଗନ୍ନାଥମହାପ୍ରଭୁଙ୍କ ଦେଉଳ ତୋଳିବାପାଇଁ ପିଠିରେ ପଥର ବୋହି ବୋହି କୁରୁମ ଯାଲଟିଯାଇ ପୁରୁଷୋତ୍ତମରେ ଇନ୍ଦ୍ରଦ୍ୟୁମ୍ନପୋଖରୀରେ

Digitized by srujanika@gmail.com

ରହୁଛନ୍ତି ସେମାନେ ତ ମୋର ପୁଅ, ନାନାଦେଶର ଲୋକ ଆସି ମୋର ଝୁଲୁମ ପୁଅଙ୍କୁ ଦେଖୁଅଛନ୍ତି, ତାଙ୍କର ପ୍ରଶଂସା କରୁଅଛନ୍ତି । ପୁଣି ଦେହକୁ ତୋଳିବାପାଇଁ ଯେଉଁମାନେ ଗୌଣି ଗୌଣି କରି ଟଙ୍କା ଅଜାଡ଼ି ଦେଇଅଛନ୍ତି ସେମାନେ ବି ମୋର ପୁଅ । ଦୁହିଁଙ୍କି ମୁଁ ଏକାଠି କୋଳରେ ବସାଏ ; ଦୁହିଁଙ୍କଠାରେ ମୋର ଏକ ସ୍ନେହ, ଏକ ଶରଧା । କିନ୍ତୁ ଗୋଟିଏ କଥାରେ ମୋର ମନ ଭୁଣା, ମୋର କେତେଗୁଡ଼ିଏ ପୁଅ ଅଛନ୍ତି ସେମାନେ ଭାରି ଦୁଃଖୀ, ତାଙ୍କପାଇଁ ମୁଁ ସବୁବେଳେ କାନ୍ଦୁଛି— ସବୁବେଳେ ମୋର ଆଖିରୁ ଲୁହ ଗଡ଼ୁଛି । ସବୁବେଳେ ମୋର ତାଙ୍କରି ଚିନ୍ତା— ମୋର ଧନୀ ପୁଅମାନେ ତାଙ୍କ ଦୁଃଖ ମେଣ୍ଟାଇଲେ ନାହିଁ—ଟିକିଏହେଲେ ତାଙ୍କୁ ପଚାରିଲେ ନାହିଁ କି ଅନାଇଲେ ନାହିଁ—କାହିଁକି ଯେ ଅନାଉନାହାନ୍ତି ମୁଁ କିଛି ଜାଣିପାରୁ ନାହିଁ –ଗରିବପୁଅମାନେ ତ ମୋର କେତେ କାମ କରୁଛନ୍ତି –ଚାଷ କରୁଛନ୍ତି, ବାସ କରୁଛନ୍ତି, ମୂଲ ଲାଗୁଛନ୍ତି,-କୋଡ଼ ହାଣୁଛନ୍ତି, ଏମିତି କେତେ କାମ କରୁଛନ୍ତି ତାହା କହିଲେ ସରିବ ନାହିଁ—କେହି କେହି ପୁଣି ମେହେନ୍ତର କାମ କରୁଛନ୍ତି । ତୁମ୍ଭମାନଙ୍କମଧ୍ୟରୁ ଯେଉଁମାନେ ମେହେନ୍ତର କାମ କରି ନ ପାରିବେ ସେମାନଙ୍କୁ ନରକ କଷ୍ଟରୁ ରକ୍ଷା କରୁଛନ୍ତି । ପୁଣି ଗରିବପୁଏ ନ ଥିଲେ ଯେଉଁ ଧନୀପୁଅମାନେ ସୁଖରେ ଅଛନ୍ତି ସେମାନେ ଏତେ ସୁଖରେ ନ ଥାନ୍ତେ । ଚାଷ କିଏ କରନ୍ତା, କୋଡ଼ କିଏ ହାଣନ୍ତା ? ମୋର ଦୁଃଖୀପୁଅମାନେ ସେମାନଙ୍କପାଇଁ ମୁଣ୍ଡଝାଳ ତୁଣ୍ଡରେ ମାରି ନ ଥାନ୍ତେ, ତାହାହେଲେ ଯେଉଁ ପୁଅମାନେ ଧନୀ ହୋଇଅଛନ୍ତି ସେମାନେ କଣ ଧନୀ ହୋଇଥାନ୍ତେ ? ସେମାନେ ଏତେକରି ସୁଦ୍ଧା ଟିକିଏହେଲେ ତାଙ୍କ କଥା କେହି ବୁଝିଲେ ନାହିଁ –ତାଙ୍କଆଡ଼କୁ ଅନାଇଲେ ନାହିଁ । ମୁଁ ତ କହୁନାହିଁ ଯେ ସେମାନଙ୍କୁ ଘରେ ବସାଇ ଖାଇବାକୁ ଦିଅ ; ତାଙ୍କୁ କାମପାଇଟି ଦେଇଥିଲେ ସେମାନେ ମୋ ପାଖରେ ଥାନ୍ତେ । ମୁଁ ତାଙ୍କ କଥା ବୁଝୁଥାନ୍ତି, ସେ ମୋ କଥା ବୁଝୁଥାନ୍ତେ । କାହିଁକି ଦେଶବିଦେଶକୁ ଦଉଡ଼ନ୍ତେ ? ପେଟ ପାଇଁ ସିନା ଦଉଡ଼ୁଛନ୍ତି, ପେଟ ପୋଷିବାପାଇଁ ଘରେ ବାଟଥିଲେ ବିଦେଶକୁ ଦଉଡ଼ନ୍ତେ କାହିଁକି ? ସେମାନେ ଗୁଣର ବୋଲି ସିନା ବଙ୍ଗ ଭଉଣୀ ତାଙ୍କୁ କୋଳରେ ଧରି ଦୁଧ ଭାତ ଖୁଆଉଛି ? ମୋ ପୁଏ ଯାହା ପରଘରେ ପୋଷା ହେଲେ ? ମୁଁ ଯାହା ଗୁଣ୍ଡିଏ ଭାତ ଦେଇ ପାରିଲି ନାହିଁ ! ପୁଣି ସେମାନେ ଏଡ଼େ ଗୁଣର ଯେ ଏହିକ୍ଷଣି ଯେବେ ସେମାନେ କଲିକତା ଛାଡ଼ି ଚାଲି ଆସନ୍ତି ତେବେ ସବୁ କଳ କାରଖାନା ଏକାବେଳକେ ବନ୍ଦ ହୋଇଯିବ । ତାଙ୍କୁ ଛାଡ଼ି ଦେଲେ ବଙ୍ଗ ଭଉଣୀ ଘନେହେଁଇ ଚଳିପାରିବ ନାହିଁ—ବଙ୍ଗ ଏଡ଼େ ଉଚ୍ଚ ସିଂହାସନରେ ବସି ସୁଦ୍ଧା ଯାହାଙ୍କୁ ମୁହୂର୍ତ୍ତେ ଛାଡ଼ିଦେଲେ ବଣା ହୋଇଯାଏ, ତାଙ୍କ ପୁଣି ଘରେ କାମ ପାଇଟି ମିଳୁ ନାହିଁ—ତେଣୁ ଯାଇଁ ପର ଦୁଆରେ ମୂଲ ଲାଗିଲେ । ବିଦେଶକୁ ତ ପେଟ ଲାଗି ଚାଲି ଯାଉଛନ୍ତି କିନ୍ତୁ ପାଉଛନ୍ତି କଣ ? ଯେଉଁ ସବୁ ଜିନିଷ ସେମାନେ କଳ କାରଖାନାରେ ତିଆରି କରୁଛନ୍ତି [illegible]

Digitized by srujanika@gmail.com

ଲାଭ ହେଉଛି ତାକୁ ଅନାଇଲେ ପୁଣି ସେଠାରେ ମୋର ପୁଅଙ୍କ ମୂଲକୁ ଅନାଇଲେ ଜଣାଯିବ ଯେ ଲାଭଠାରୁ ମୂଲ ଭାରି ଢ଼ଣା । ଆକାଶରୁ ପାତାଳ ଯେତକ ତଫାତ୍ ଲାଭରୁ ମୂଲ ସେତକ ତଫାତ । ଲାଭ ଯାକ ଯାଉଚି ପର ହାତକୁ କିନ୍ତୁ ମୋ ପୁଏ ମୁଖ ଝାଳ ତଳପାରେ ମାତ୍ର ପାଉଛନ୍ତି କଣ ? ପୁଣି ଯେଉଁ ମାଲ ମସଲା ଘେନ କଳ କାରଖାନାରେ ଜିନିସ ଗୁଡ଼ିକ ତିଆରି ହେଉଛି, ତହିଁରେ ମୋର ଭାଗ ବେଶି । ସବୁ ଜିନିସ ମୁଁ ତୁମ୍ଭରମାନଙ୍କ ପାଇଁ ଠାବେ ଠାବେ ଫେଣ୍ଡି ରଖିଅଛି । ଦୋସରା ଲୋକେ ତହିଁରୁ ଲାଭ ନେଉଛନ୍ତି । ତୁମ୍ଭେମାନେ ଯଳକା ପର ଗୁହଁ ରହିଅଛ । ପୁଣି ପର ଦୁଆରକୁ ଦଉଡ଼ୁଛ ପେଟ ପୋଷିବା ପାଇଁ । ଘର ମାଲ ମସଲା ଘରେ ରଖି ଜିନିସ ପତ୍ର ଏହିଠାରେ ତିଆରି କରୁଥିଲେ ଲାଭ ଘରେ ରହିଥାନ୍ତା; ମୂଲକୁ ମୂଲ ପାଉଥାନ୍ତେ । ସେ ବୁଦ୍ଧି ଆଜଯାଏ ତୁମ୍ଭମାନଙ୍କୁ ଦିଶିଲା ନାହିଁ ଅନ୍ନ କଷ୍ଟ ହେବାରୁ ପର ଦୁଆରକୁ ଯାଉଛ—ଘରକୁ ଅଣୁଚ ପ୍ଲେଗ ରୋଗ, କଲିକତିଆ ଜର ଓ ଝାଡ଼ାବାନ୍ତି । କେତେ କେତେ ପୁଅ ମୋର ବଦେଶକୁ ଯାଇ ଏହି ସବୁ ରୋଗରେ ମରି ଯାଇ ମୁହଁ ଲୁଚାଇ ରହିଛନ୍ତି—ଏଥିରୁ ଅଧିକ ଦୁଃଖ ମୋର କଣ ହୋଇପାରେ ? ମୋର ଧନୀ ପୁଏ ଏଦୁଃଖକୁ ଟିକିଏ ଦେଖିଲେ ନାହିଁ । ଧନୀ ପୁଅମାନଙ୍କୁ ମୁଁ ପଚାରେ ତାଙ୍କ ଗରିବ ଭାଇମାନଙ୍କ ପାଇଁ ସେମାନେ କଣ କରଛନ୍ତି ? ଏପର୍ଯ୍ୟନ୍ତ କଛି କର ନାହାନ୍ତି କଛି କରିଥିଲେ ମୋ ଆଖିରୁ ସବୁବେଳେ ଲୁହ ଗଡ଼ୁ ନ ଥାନ୍ତା ।

ମୁଁ ଆଜ ମୋର ସବୁପୁଅଙ୍କ ପାଖରେ ଗୋଟିଏ ମାଗୁଣି କରୁଚି । ଏ ସେ ମାଗୁଣିର ଅଙ୍କା ପଢ଼ିକା । ମୋର ଗରିବ ପୁଅଙ୍କପାଇଁ ମୁଁ ଯାହା ଏହିକ୍ଷଣି କରିବାକୁ ଯାଉଚି ସେଥିରେ ସମସ୍ତେ ଆସି ଯୋଗଦିଅ । ତୁମ୍ଭେମାନେ ଯେବେ ମତେ ଏଥିରେ ସାହାଯ୍ୟ କରିବ, ମୋ ଗରିବ ପୁଅମାନଙ୍କ ଦୁଃଖ ଜନ୍ମେ ମେଣ୍ଟିବ । ମୋର ପୁଏ ଜଗନ୍ନାଥ ଦେଉଳ ତୋଳିଥିଲେ, ଆଜ ଜଗତ ଲୋକେ ସେହିଠାରେ ମୁଣ୍ଡିଆ ମାରୁଛନ୍ତି, ମୋର ଲକ୍ଷ ଲକ୍ଷ ପୁଅ ମହାପ୍ରଭୁଙ୍କ ଦେଉଳକୁଗି ପୋଷେ ହେଉଛନ୍ତି । ସେହିପରି ଅନ୍ତର ଗୋଟିଏ ଦେଉଳ ମୁଁ ତୋଳିବ । ସେହିଠାରେ ମୋର ଗରିବ ପୁଅମାନେ ପୋଷା ହେବେ, ମୁଁ ଜାଯେ ସେହିଠାରେ ବହିବ, ଲକ୍ଷ୍ମୀସାନ୍ତାଣିଙ୍କୁ ଆଣି ରଖିବ । ସବୁପାନେ ଗୁରୁବାର ଓଷା କରିବ । ମାଣ ବସାଇବ ଓ ଠାକୁରାଣୀଙ୍କୁ ପୂଜା ନିତ ନିତ କରୁଥିବ । ଲକ୍ଷ୍ମୀଙ୍କର କୋଠ-ଭଣ୍ଡାର ତହିଁରେ ଥାପିଦେବ ଓ ଗୋଟିଏ ଧାନ ମେଣ୍ଟା ଟାଙ୍ଗି ଦେବ । ସେହିଠାରେ ମୋର ସବୁଦୁଃଖୀ ପୁଅଙ୍କୁ ଖାଇବାକୁ ଦେବ । ସେହି ଦେଉଳ ତୋଳିବାପାଇଁ ତୁମ୍ଭମାନଙ୍କୁ ସମସ୍ତଙ୍କୁ ଗୋଟିଏ ଲେଖାଏ ଟଙ୍କା ମାଗୁଚ, ବର୍ଷକୁ ବର୍ଷ ପୁନିଅ ପର୍ବରେ ଧରମ ଅରଜିବାପାଇଁ କେତେ କେତେ ଟଙ୍କା ଖରଚ କରଚ, କିନ୍ତୁ ଏ ଧରମ ଅରଜିବାପାଇଁ ତମ ଜୀବନଯାକରେ ଥରେ-ମାତ୍ର ଗୋଟିଏ ଟଙ୍କା ଦେବାକୁ ହେବ, ଏ ଦାନରେ ଯେତେ ଧରମ ହେବ ତାହା ଓଷା ପୂଜା ଧରମଠାରୁ ଅଧିକ, ଏ ଟଙ୍କାରେ ଯେ ଟଙ୍କାବଲା ଦୁଃଖୀମାନେ ପୋଷା-

Digitized by srujanika@gmail.com

ହେବେ ତାହା ନୁହେଁ । ଯେଉଁମାନେ ଟଙ୍କାଏ ଲେଖାଏଁ ଦେଇଥିବେ ସେମାନେ ମଧ୍ୟ ସେଥିର ଭାଗ ଭଳି ପାଇବେ । ଏଥିରେ କେହି କଳପଣା କରିବ ନାହିଁ । କଳପଣା କଲେ ମୋ ଆଖିରୁ ଚିରଦିନ ଲୁହ ଗଡୁଥିବ । ମୋର ଅସନ୍ତୋଷ ହେଲେ ଭଗବାନ ନିଜେ ଅସନ୍ତୁଷ୍ଟ ହୁଅନ୍ତି । ଭଗବାନଙ୍କ ଅସନ୍ତୋଷରେ ତୁମ୍ଭମାନଙ୍କର ଅନିଷ୍ଟ ହୋଇ ପାରେ । ସେ ଅନିଷ୍ଟ ଆଉ ଏଣେ ଦୁଃଖି ପୁଅଙ୍କ ଦୁଃଖ ଏ ଦୁହିଁଙ୍କି ଦେଖି ମୋର ଦେହ ସହିବ ନାହିଁ । ଏଣୁ କରି ମୁଁ ତୁମ୍ଭମାନଙ୍କ ନିକଟରେ ଏ ମାଗୁଣିଟି କରୁଅଛି ।

ଯେଉଁମାନେ ଟଙ୍କାଟିଏ କର ଦେବାକୁ ଇଚ୍ଛା କରନ୍ତି ସେମାନେ ଓଡ଼ିଆ ପୁଅଙ୍କର ସେଉଁ ମେଳା କଟକରେ ହେବ ସେଥିପାଇଁ ଜଣାଇଲେ ମୁଁ କେତେକ ବଡ ଦେଉଳ କରିବାକୁ ହେବ ତାହା ଠିକ୍ କରି କାମ ଆରମ୍ଭ କରିବ ଏବଂ ସେମାନଙ୍କର ନାମ ଛପାଇ ଗୃହଅଟେ ବାଣ୍ଟିବ । ଉତ୍କଳ ସମ୍ମିଳନୀର ସମ୍ପାଦକ ମାନ୍ୟବର ଶ୍ରୀ ମଧୁସୂଦନ ଦାସ, ( ଡ଼ାକନାମ ମଧୁବାବୁ ) କଟକଙ୍କ ନିକଟକୁ ଚିଠିପତ୍ର ପଠାଇବାକୁ ହେବ ।

୩ । ମାନ୍ୟବର ମିଃ ମଧୁସୂଦନ ଦାସ ସିଃ ଆଇଃ ଇଃ ନିମ୍ନଲିଖିତ ବକ୍ତୃତାରେ ଉପକ୍ରମଣିକା କଲେ ।

ଉପକ୍ରମଣିକା

ସଭାପତି ମହୋଦୟ, ଭ୍ରାତା ଓ ଭଗ୍ନିଗଣ,

କାଲି ସଭା ଶେଷରେ ଶୁଣିଲି ଯେ କେତେଜଣ ଭ୍ରାତା ଏ ମଣ୍ଡପରୁ ଧୂଳି ନେଇ ମୁଣ୍ଡରେ ବୋଳିଛନ୍ତି ଓ ଲୁଗାରେ ବାନ୍ଧି ଘରକୁ ନେଇଛନ୍ତି । ସେ ପ୍ରକାର ଭ୍ରାତା କିଏ, ତାଙ୍କର ପରିଚୟ ପାଇବା ନିମନ୍ତେ ବହୁତ ଚେଷ୍ଟା କଲି । କିନ୍ତୁ ନ ପାଇବାରୁ ମୁଁ ମଧ୍ୟ ଏଥିରୁ ଧୂଳି ବାନ୍ଧି ନେଇ ରଖିଅଛି । କାରଣ, ସେ ପ୍ରକୃତରେ ମାତାର ପରିଚୟ ପାଇଛନ୍ତି । ଏ ସଭାମଣ୍ଡପରେ ଉତ୍କଳ ଜନନୀ ତାଙ୍କୁହିଁ ଦେଖା ଦେଇଛନ୍ତି । ଯେଉଁ ଭ୍ରାତାମାନଙ୍କର ପରିଚୟ ପାଇଛନ୍ତି, ସେ ପାଣ କି କଣ୍ଡରା ହେଲେ ମଧ୍ୟ ସେ ମୋର ଅଗ୍ରଜ ଓ ପୂଜ୍ୟ । ତେଣୁ ତାଙ୍କର ପଦଧୂଳି ଏ ଧୂଳିରେ ନିଶ୍ଚୟ ଥିବ ମୁଁ ଏହି ଧୂଳି ନେଇ ରଖିଅଛି (କରତାଳି) । ମାତୃପୂଜାରେ ବାଉରି, କଣ୍ଡରାର ଯେ ଅଧିକାର, ବ୍ରାହ୍ମଣ କରଣର ସେହି ଅଧିକାର, ରାଜାର ଯେ ଅଧିକାର, ପ୍ରଜାର ସେ ଅଧିକାର । ( କରତାଳି )

* * *

ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ, ଓଡ଼ିଆ ଜାତିକୁ ଉଠାଇବା । ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ । ତେଣୁ ସେମାନଙ୍କର ଉନ୍ନତି ନ ହେଲେ ଦେଶର ପ୍ରକୃତ ଉନ୍ନତି ? । ସେମାନେ ଭୂମି କର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଅଛନ୍ତି । ସେମାନେହିଁ ଉତ୍କଳମାତାଙ୍କର ପ୍ରକୃତ ସେବକ । ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ କରାନ୍ତି । ଆମ୍ଭମାନଙ୍କ ଦେଶର ରାଜା ଜମିଦାରଗଣ ଶରୀରର

Digitized by srujanika@gmail.com

ହୃତ୍ପିଣ୍ଡ । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ଶିର ପ୍ରଶିରାରୁ ରକ୍ତକୁ ଗ୍ରହଣ କରେ । ରକ୍ତ ତାହା ପରିଷ୍କାର କରି ଶରୀରର ନାନା ସ୍ଥାନକୁ ପ୍ରେରଣ କଲେ ଅଙ୍ଗ ପ୍ରତ୍ୟଙ୍ଗ ସବଳ ଓ ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗ ପ୍ରତ୍ୟଙ୍ଗ ପରି, ସେମାନଙ୍କ ଉପାର୍ଜିତ ଶକ୍ତି ରକ୍ତ ସ୍ୱରୂପ ଜମିଦାର ଶରୀରରେ ପ୍ରବେଶ କରୁଛି । ଜମିଦାର ଯଦି ସେ ସବୁ ଅର୍ଜନ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି ସାଧନରେ ବ୍ୟୟ କରନ୍ତି, ସମାଜର ଶରୀର ସୁସ୍ଥାବସ୍ଥାରେ ରହିବ ।

ବାଲି ଗୀତ ଗାଉଣ ସମୟରେ ଶୁଣିଥିଲେ—

“ ଭୂମିକମ୍ପ ହେବ ଧରଣୀ ଫାଟିବ ଉଠିବେ ସହସ୍ର ଭୁଜା;
ସେହି ତୋର ମାତା ସେହି ତୋର ପିତା କର ସେହି ପାଦ ପୂଜା” ।

ଯଦି ସେହି ମାତାଙ୍କର ସନ୍ତାନ ବାଲି ପାଉଥିବ ବା ଅନ୍ନ ପାଉବ; ତେବେ ଭୂମିକମ୍ପ ହେବନାହିଁ; ଭୂମିର କୃଷିକର୍ମ ହେବ ।

( ଏଠାରେ ମଧୁବାବୁ ଗୋଟିଏ ଚିତ୍ର ଦେଖାଇଥିଲେ । ପଟର ଉପର ଭାଗରେ ସରକାର, ପରେ ଜମିଦାର; ତଳ ଧାଡ଼ିରେ ମହାଜନ ଓ ତଳଧାଡ଼ିରେ କୃଷକ ଭୂମି ଖୋଳୁଥିବାର ଚିତ୍ରିତ ଥିଲା । ) ସର୍ବତଳେ ଦେଖନ୍ତୁ, ଚାଷୀ ମାଟି ଖୋଳୁଅଛି । ଭଗୀରଥ ତପସ୍ୟା କରି ଯେପରି ଗଙ୍ଗାକୁ ଆଣିଥିଲେ, ଏ ସେହିପରି ପରିଶ୍ରମ କରି ନିର୍ଝର ବୁହାଉଛି । ସେ ନିର୍ଝରରେ ଧାନ ବଢ଼ୁଛି । ସେହି ସ୍ରୋତ ମହାଜନ ବାକ୍ସରେ ପ୍ରବେଶ କରୁଛି । ମହାଜନ ବାକ୍ସରୁ ସ୍ରୋତ ଟଙ୍କାରୂପେ ବାହାରି ଜମିଦାର ବାକ୍ସରେ ପଡ଼େ । ସେଠାରୁ ସ୍ରୋତ ନୋଟରୂପେ ବାହାରି ରାଜକୋଷରେ ପହଞ୍ଚେ । କିନ୍ତୁ ସେଥିରୁ ତାହା ଆଉ ଫେରେ ନାହିଁ । ଭଗୀରଥ ଗଙ୍ଗା ଆଣିଲାବେଳେ ନାନା ହଇରାଣରେ ପଡ଼ିଥିଲେ । ଶିବଙ୍କ ଜଟାରେ, ବ୍ରହ୍ମାଙ୍କ କମଣ୍ଡଳରେ ଗଙ୍ଗା ଲୁଚିଥିଲେ । ସେ କଷ୍ଟ ସହ୍ୟକରି ପରିଶ୍ରମ କରିଥିଲେ । ତାଙ୍କ ବଂଶ ଉଦ୍ଧାରରେ ଗଙ୍ଗା ଲାଗିଥିଲେ ବୋଲି ପିତା ତାଙ୍କ 'ପରିଶ୍ରମ ସାର୍ଥକ ହୋଇଥିଲା । କିନ୍ତୁ ଏ ସ୍ରୋତ ମାଟିଖୋଳାର ବଂଶ ଉଦ୍ଧାରରେ 'ତ' କାମରେ ଲାଗିଲା ନାହିଁ; ଏହାର ବଂଶ ନାଶ ହେଲା ।

( ବର୍ତ୍ତମାନ ସେ ଆଉ ଗୋଟିଏ ଚିତ୍ରପଟ ଦେଖାଇ ଥିଲେ । ତାହା ଉର୍ଦ୍ଧ୍ୱ ଭାଗରେ ଜଣେ ବୃହତ୍ ମୋଟ ମସ୍ତକ ଚିତ୍ରିତ; ତଳେ ଛଅଗୋଟି ମସ୍ତକ ଚିତ୍ରିତ ଆଉ ଜଣେ ବେଷ୍ଟକଣ୍ଠାସ୍ଥିତ ନୟନରେ ମୁଦ୍‌ଗର ହସ୍ତ ହୋଇ ବଣ୍ଡାସ୍ୱଭାବ, ସର୍ବତଳେ ପଚାଶି ମୁଣ୍ଡ ଚିତ୍ରିତ । )

ଭାଇମାନେ,

ଏହି ଚିତ୍ରରେ ପ୍ରଥମରେ ବଡ଼ ମୁଣ୍ଡ ଚିତ୍ରିତ, ସେହିଟି ସରକାର । ସେ ବତିଶଟୋ ମୁଖରେ ବୃଷ ଗ୍ରହଣ କରନ୍ତି । ପରେ ଜମିଦାର ଛଅମୁଣ୍ଡ, ଛଅଶଟା ମୁଖରେ ଟଙ୍କା ପାଏ । ସର୍ବତଳେ କୃଷକ ୨୦ ମୁଣ୍ଡ, ୨୦ ଟି ମୁଖ ଦିଏ । ସରକାର ହେଲେ ବତିଶଟା, ଜମିଦାର ହେଲେ ଛଅଶଟା, ଆଉ ସେ ଧନ ଯୋଗାନ୍ତି କୃଷକ



Digitized by srujanika@gmail.com

ହେଲା, ସେ ଦେବ ୧୫ ଟଙ୍କା । ତାହାରେ କୃଷକର ସଂଖ୍ୟା ବେଶୀ, ଜାତି ଉଠାଇବାକୁ ହେଲେ ଏହାକୁ ଏହି ୧୫ ଟଙ୍କା ମୁଖରୁ ରକ୍ଷା କରିବାକୁ ହେବ ।

ଅସ୍ମାମାନଙ୍କର ପୂର୍ବ ପୁରୁଷମାନେ ଅସ୍ମାମାନଙ୍କ ପରିତ୍ରାଣ ନିମନ୍ତେ ଶିବ ମନ୍ଦିର, ବିଷ୍ଣୁ ମନ୍ଦିର ଇତ୍ୟାଦି ଅନେକ ମନ୍ଦିର ନିର୍ମାଣ କରିଅଛନ୍ତି । କିନ୍ତୁ କେଉଁଠାରେ ହେଲେ ଲକ୍ଷ୍ମୀ ପୂଜା ମନ୍ଦିର ଆପଣମାନେ ଦେଖିଛନ୍ତି କି ? ଲକ୍ଷ୍ମୀ ମନ୍ଦିର ନାହିଁ । ଅବଶ୍ୟ ପ୍ରତ୍ୟେକଙ୍କ ଘରେ ଗୁରୁବାର ପୂଜା ଖଟୁଲି, ମାଣ ଅଛି । ସେହି ପ୍ରତ୍ୟେକଙ୍କର ସ୍ୱତନ୍ତ୍ର ପୂଜାର ବିଷୟ । କିନ୍ତୁ ଜାତିର ମାଣ, ଗୁରୁବାର ଖଟୁଲି କାହିଁ ? ଲକ୍ଷ୍ମୀପୂଜା ନ କଲେ ଉନ୍ନତି ହେବ ନାହିଁ । ଜାତିର ଲକ୍ଷ୍ମୀ ମନ୍ଦିର ନ ହେଲେ ଜାତି ଉଠିବ ନାହିଁ । ତେଣୁ ଗୋଟିଏ ଜାତୀୟ ଲକ୍ଷ୍ମୀ ମନ୍ଦିର ଦରକାର ।

ଆଠଗଡର ରାଜା ସାହେବ ଗୋଟିଏ ପତ୍ର ଲେଖିଅଛନ୍ତି, ତାହା ପଢିବା ଉଚିତ । ଆପଣମାନେ ଅଳ୍ପ ଶୁଣନ୍ତୁ । ( ଏଠାରେ ସେ ଆଠଗଡ ରାଜାଙ୍କ ପତ୍ରଟି ପାଠ କରିଥିଲେ । ଦେଶର ବର୍ତ୍ତମାନର ଅବସ୍ଥା ଓ ବସ୍ତ୍ରର ଦୁର୍ମୂଲ୍ୟତା ଦୃଷ୍ଟିରେ ଗୋଟିଏ ବସ୍ତ୍ର ବୟନ କାରଖାନା ପ୍ରତିଷ୍ଠିତ ହେବା ଦରକାର ଏବଂ ତାହା ପ୍ରତିଷ୍ଠିତ ହେଲେ ସେ ନିଜେ ଏକଶ ଟଙ୍କା ଅଂଶ ଏକଶତ ( ଦଶ ସହସ୍ର ଟଙ୍କାର ) କିଣିବେ ବୋଲି ଲେଖିଥିଲେ । ) ଅନ୍ୟ ଜଣେ ମଧ୍ୟ ଏକ କାରଖାନା କରିବା ନିମନ୍ତେ ପତ୍ର ଦେଇଛନ୍ତି । ଚିଠିର ଅବିକଳ ନକଲ ପରିଶିଷ୍ଟରେ ଦିଆ ଯାଇଅଛି ।

ଭାଇମାନେ, ଇଂରେଜ ଖୁବ୍ ଅଗ୍ରସର ଜାତି, ଅମ୍ଭେମାନେ ଇତିହାସରୁ ପଢ଼ୁଛୁଁ ଆର୍ଯ୍ୟ ଜାତି, ଗ୍ରୀକ ଓ ରୋମଜାତି ଖୁବ୍ ଅଗ୍ରସର ଥିଲେ । ବର୍ତ୍ତମାନ ସେମାନେ କାହାନ୍ତି ? ଏହାର କାରଣ ତାଙ୍କର ଭୁଲ ଥିବାରୁ ଅଧିକ ଦିନ ତିଷ୍ଠି ପାରିଲେ ନାହିଁ । ମୁଁ ପିଲାଦିନେ ସ୍କୁଲରେ ପଢିଲାବେଳେ ଶୁଣିଛି, ଅବଶ୍ୟ ଅନ୍ଧାର ସ୍ଥଳରେ ଯେ ଆଗରେ ଗଲେ ସେ ଗାଡ଼ିଆରେ ଖସଡା ଖାଇ ପଡ଼େ, ଅନ୍ୟମାନେ ସେ ଭୁଲ ଦେଖି ସତର୍କ ହୋଇଯାନ୍ତି । ଆମ ଓଡ଼ିଆ ଜାତି ସବୁ ପଶ୍ଚାତ୍‌ପଦ । ଏହାର ଗୋଟିଏ ଭଲ ଫଳ ଦେଖୁଛି, ପଛରେ ଥିବାରୁ ଆମେ ଅନ୍ୟ ଜାତିମାନଙ୍କର ଭୁଲ ଦେଖି ପାରୁଅଛୁଁ । ଆମେ ଆଉ ସେ ଭୁଲ କରିବା ନାହିଁ । ଇଂରେଜମାନେ ଏଠାରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ହୋମ୍ ଚାର୍ଜି ନେଇ କଳ ବସାଇଅଛନ୍ତି । ଯୁଦ୍ଧଯୋଗୁଁ ବସ୍ତ୍ରର ଦୁର୍ମୂଲ୍ୟତା ହେବାର ଗୋଟିଏ ପ୍ରଧାନ କାରଣ ଯେ ଇଂରେଜମାନଙ୍କର କପା ନାହିଁ । ତେଣୁକରି ବସ୍ତ୍ର କାରଖାନା ଖୋଲିବାକୁ ହେଲେ ଆଗେ କପା ଚାଷ କର ।

ଆମ ଦେଶରେ ଅଭାବ କ'ଣ ଅଛି । ଲୋକେ କହନ୍ତି ଓଡ଼ିଶା ଗରିବ, ମୁଁ ତାହା କହିବି ନାହିଁ । ବର୍ତ୍ତମାନ କଲିକତା, ନାଗପୁର ଇତ୍ୟାଦି ସ୍ଥାନର କଳ କାରଖାନାମାନଙ୍କରେ ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଅଛନ୍ତି । ଏହାର ଅର୍ଥ ଓଡ଼ିଆ ହାତର ମୂଲ୍ୟ ଅଛି । ସେଠାରେ ଯେ ଦୈନିକ ଟଙ୍କାଏ ଅଦାୟ କରିବ ଏଠାରୁ

Digitized by srujanika@gmail.com

ଅସିଲେ ଦଶ ପଇସା ମାତ୍ର ପାଉଛ । ଆମ୍ଭେ କଣ ତାଙ୍କୁ କାର୍ଯ୍ୟ ଦେଇପାରୁନା ! ଯୁଦ୍ଧ ଜାରଶାଳା ହେଲେ ସେମାନେ ଅସିବେ । ଯେଉଁ ହାତରେ ଭୋଗାର୍ଜି ଭୂରଦେଶରେ ମନ୍ଦିରମାନ ତିଆରି ହୋଇଅଛି ସେହି ହାତର ଲକ୍ଷ ବିଦ୍ୟାର୍ଥୀମାନେ ଖାଇ ଯାଉଅଛନ୍ତି । ଧିକ୍ ଅମ୍ଭମାନଙ୍କୁ ।

*        *        *

"ଉତ୍କଳ"ର ସମ୍ପାଦକ, ସେ ଯେ ହେଉ, ଅଦିଲେ ଉତ୍କଳୀୟ ସ୍ୱାର୍ଥତ୍ୟାଗ ନିମନ୍ତେ ଧନ ଦାନ ଓ ସ୍ୱେଚ୍ଛା ସେବା କରିବା ପାଇଁ ଲେଖିଥିଲେ । ନିମ୍ନଲିଖିତ ବ୍ୟକ୍ତିଗଣ ସେଥିପ୍ରତି ଇଚ୍ଛୁକ ହୋଇଅଛନ୍ତି । ସେମାନଙ୍କ ନାମ ମୁଁ ପଢୁଅଛି ।

୧ । ରାଜ କିଶୋର ମହାନ୍ତି, ଏଣ୍ଟ୍ରାନ୍ସ ଛାତ୍ର, ଗ୍ରୀଷ୍ମବନ୍ଦାଶରେ ବିନା ବେତନରେ ଯେ କୌଣସି କାର୍ଯ୍ୟ କରିବେ ।

୨ । ସଚ୍ଚିଦାନନ୍ଦ ପଟ୍ଟନାଏକ, ଉପରୋକ୍ତ ପ୍ରକାରେ ।

୩ । ଲକ୍ଷ୍ମଣ ସାହୁ, ସେବା ବିନାବେତନରେ ।

୪ । ଶ୍ରୀ ଶ୍ରୀବତ୍ସ ପଣ୍ଡା ( ଅସିକା ) ୫ ଟଙ୍କା ଦାନ ।

୫ । ଶ୍ରୀମତୀ ରେବା ଦେବୀ, ବିନା ବେତନରେ କାର୍ଯ୍ୟ ଓ ୧୦ ଟଙ୍କା ଦାନ ।

୬ । ଚାରୁଷ୍ଟର ମିଶ୍ର, ଅଦାୟର ତୋହଏ ଭାଗରୁ ଭାଗେ ଦାନ । ଇତ୍ୟାଦି ଇତ୍ୟାଦି ।

( ଏ ସମ୍ବନ୍ଧେ କଛି କହି, ଅନୁପସ୍ଥିତ ବ୍ୟକ୍ତିଙ୍କ ସମ୍ବାଦ ପାଠପରେ ସେ ଅସନ ଗ୍ରହଣ କରିଥିଲେ ।

୨—ସଚ୍ଚିଦାନନ୍ଦ ପଟ୍ଟନାୟକ, ଉପରୋକ୍ତ ପ୍ରକାରେ ।

୩—ଲୋକନାଥ ପଟ୍ଟନାୟକ, ୧ମ ବାର୍ଷିକ ଛାତ୍ର, ରେଭେ କଲେଜ ।

୪—ଶ୍ରୀବତ୍ସ ପଣ୍ଡା, ସବ୍‌ଇନ୍‌ସ୍‌ପେକ୍ଟର, ମାଧବବୋରଡ଼ା, ଗଞ୍ଜାମ ଟ ୫ ୧ ଦେବେ ।

୫—ଶ୍ରୀମତୀ ରେବା ଦେବୀ କୌଣସି ପ୍ରକାର ପାରିଶ୍ରମିକ ନ ନେଇ ବର୍ତ୍ତମାନ କାର୍ଯ୍ୟ କରିବେ ଓ ଟ ୧୦ ୧ ଦେବେ ।

୬—ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ର ଚାରୁଷ୍ଟର ବାର୍ଷିକ ଅୟରୁ ୧/୨୦ ଅଂଶ ଦେଶ ପାଇଁ ଦେବେ ।

୭—ବ୍ରଜବନ୍ଧୁ ଷଡ଼ଙ୍ଗୀ, ମାଟ୍ରିକୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି । ଗ୍ରୀଷ୍ମାବକାଶରେ ତୁଲ ଉତ୍ତରଦନ କାର୍ଯ୍ୟ କରିବେ ଏବଂ ଏକଟଙ୍କା ଦେବେ ।

୮—କୃଷ୍ଣପ୍ରସାଦ ମହାପାତ୍ର, ବାରିପଦା, ଜଣେ ମାଟ୍ରିକ ପରୀକ୍ଷାର୍ଥୀ, ଅପ୍ରେଲଠାରୁ କଲେଜ ସେସନ ଅରମ୍ଭ ପର୍ଯ୍ୟନ୍ତ କାର୍ଯ୍ୟ କରିପାରନ୍ତି ।

୯—ଗୋପାଳପ୍ରସାଦ ସିଂହ, ଭଦ୍ରକ, ୧୪ । ୩ । ୧୮ ରୁ ଡ଼ିସେମ୍ବର ଶେଷ ସୁଦ୍ଧା ଦୈନିକ ଦୁଇ ଘଣ୍ଟା ହିସାବରେ ଜଗତସିଂହପୁର ମା ଓ ଭଦ୍ର ମଧ୍ୟରେ ଓ ଯାଜପୁର ସହରରେ କାର୍ଯ୍ୟ କରି ପାରନ୍ତି ଏବଂ ଟ ୫ ୧ ଦେବେ ।

Digitized by srujanika@gmail.com

୧୦—ଚନ୍ଦ୍ରଶେଖର ପଟ୍ଟନାୟକ ବି, ଏ, ବର୍ଷରେ ଏକ ସପ୍ତାହ କାର୍ଯ୍ୟ କରିବେ, ପ୍ରତିଦିନ ସନ୍ଧ୍ୟା ସମୟରେ ଉତ୍କଳ ମାତାଙ୍କ ନିମନ୍ତେ ପ୍ରାର୍ଥନା କରିବେ ଏବଂ ମୁଠିଟିଏ ଦେବେ।

୧୧—ହରି ପ୍ରସାଦ ସିଂହ, କଟକ, ଉତ୍କଳ କର୍ମ ନିମନ୍ତେ ବ ୧୫ ଦିନ କାର୍ଯ୍ୟ କରିବେ। ନିଜଗ୍ରାମ ସମବାୟକୁ ଟ ୧୦ ୲ ଅଦାୟ କରି ଦେବାର ଭାର ନେବେ ଏବଂ ନିତେ ମୁଠିଟିଏ ଦେବେ।

୧୨—ହରେକୃଷ୍ଣ ଦାସ, ଭବାନୀ ପାଟଣା, କଳାହାଣ୍ଡି, ଏଡ ଅଫୁର ପ୍ରତି ଟଙ୍କାରେ ଟ ୭ ୲୩ ଯେକୌଣସି ଜାତୀୟ କାର୍ଯ୍ୟରେ ବ୍ୟୟ କରିବା ପାଇଁ ଅଲଗା ରଖିବେ ଏବଂ ଜାତୀୟ ପାଣ୍ଠି ନିମନ୍ତେ ଟ ୧୦୦ ୲ ଦେବେ।

୧୩—କୃଷ୍ଣଚନ୍ଦ୍ର ପଟ୍ଟନାୟକ, ବହଳଦା, ମୟୂରଭଞ୍ଜ, ଜଣେ ବି. ଏ. ପରୀକ୍ଷାର୍ଥୀ, ମେ ମାସ ଆରମ୍ଭରୁ ଜୁନ ତା ୧୫ ରିଖ ପର୍ଯ୍ୟନ୍ତ 'free service ଦେଇ ପାରନ୍ତି।

୧୪—ବନମାଳୀ ମିଶ୍ର, ବେଗୁନିଆ, ପୁରୀ ଦେଶଲୋକେ ପିଲାମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଗ୍ରାମର ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଇ ପାରନ୍ତି ଏ ବର୍ଷମଧ୍ୟରେ ଶିକ୍ଷା ଦେବେ ଏବଂ ଟ ୫ ୲ ଜାତୀୟ ପାଣ୍ଠିକୁ ଦେବେ। ସେ ଜଣେ ବି. ଏ. ପରୀକ୍ଷାର୍ଥୀ।

୧୫—ଅର୍ଜୁନ ଭୂୟାଁ, ପୋଃ ଲକ୍ଷ୍ମୀନାପୁର, ବାରିପଦା, ଜାତୀୟ ପାଣ୍ଠି ନିମନ୍ତେ ଟ ୫୦ ୲ ଦେବେ।

୧୬—ରଘବାନନ୍ଦ ଦାସ ନିମ୍ନଲିଖିତ ପ୍ରକାରରେ form ପୂରଣ କରି ଅଛନ୍ତି,

Name in full—Raghabananda Das.

Postal address—Puri, B. N. R.

Nature of Sacrifice—Intending to retire from present post at the earliest possible opportunity to attend to my hobbies vig.

(a) Leading a retired life in rural area to instruct people on improved and economical agriculture and trade suiting to their circumstances; to impress on their mind that their habit of indiscriminate and thoughtless borrowing ( indebtedness ) in what leads them into ultimate ruin, to try to prevent, as much as lies in my power, early and imprudent marriages and to point out to the people that the ideas of the

Digitized by srujanika@gmail.com

marriage (gruhastasram) according to the old Hindu *ashramic* system is conducive to check undesirable increase of population—the root of all events and to keep the population in a healthy normal state of growth and to generally make the rural population hope for better economical advancement by following an honest and truthful course of conduct in their everyday life to enhance their credit;

(b) Improving my agricultural Bank at home for further benefit of the local agricultural and commercial people; and

(c) Establishing some small business concerns at my native village vig. a small oil mill for providing work and teaching business habits, including gardening and diarykeeping.

Donation for national fund—Twenty five Rupees only, if it will go to form a nucleus to a national fund to be solely employed to improve the Industrial Condition of Mother-Utkal.

୧୭—ଭୁବନାନନ୍ଦ ଦାସ, ୧୭, ଓଭ ଲେନ, ବମ୍ବେ,—

Nature of Sacrifice—too self consecious to decide on the nature of sacrifice.

ପ୍ରତିବର୍ଷ ଦକ୍ଷିଣର ଅନ୍ୟ ଜାତୀୟ ପାଣ୍ଠିକୁ ଦେବାପାଇଁ ପ୍ରସ୍ତୁତ ଏବଂ ଏ ୧୫ ଦ ଜମନ୍ତ୍ରେ ବଙ୍ଗୀୟ ଓ ଅଧ୍ୟବସାୟର ଗୁଣମାନଙ୍କ ଶିକ୍ଷାଦେଇ ପାରିବେ ଏମ୍। ସର୍ବ ସାଧାରଣରେ ଅଧିକତ ଅଧ୍ୟବସାୟ ଓ ଚାରିବାର ସମ୍ବନ୍ଧ ଜନ ସାଧାରଣରେ ପ୍ରଚାର କରି ପାରିବେ ।

୧୮—ସତ୍ୟକୃଷ୍ଣ ବସୁ ଏମ୍ ଏ, ଜାତୀୟ ପାଣ୍ଠି ନିମନ୍ତେ ପାଞ୍ଚଟଙ୍କା ଦେବେ ।

୧୯—ଭଗୀରଥୀ ମହାନ୍ତି ଏମ୍ ଏ, ଭଦ୍ରକ ସିଦ୍ଧପୁର, ସମ୍ମିଳନୀର କାର୍ଯ୍ୟ କରିବେ । ଏ ବର୍ଷ ନିମନ୍ତେ ଜାତୀୟ ପାଣ୍ଠିକୁ ଟ ୫୯ ଦେବେ, ଆଗତ ବର୍ଷ ଏକ ମାସ ନିମନ୍ତେ ନିଜ ଗ୍ରାମର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ସମ୍ମିଳନୀର ଉଦ୍ଦେଶ୍ୟ ଲୋକମାନଙ୍କୁ ବୁଝାଇବେ ।

୨୦—ଶ୍ୟାମାନନ୍ଦ ପଟ୍ଟନାୟକ, କଟକ ତ୍ୟାଗର ମାତ୍ରା ଅନ୍ୟକୁ ଜଣାଇବେ ନାହିଁ ଏବଂ ଜାତୀୟ ପାଣ୍ଠି ନିମନ୍ତେ ଟ ୫୧ ଦେବେ ।

Digitized by srujanika@gmail.com

୧୧—ନନ୍ଦକିଶୋର ପଟ୍ଟନାୟକ, ଖୋର୍ଦ୍ଧା, କେବଳ ଅପଣାର ଉଦର ପ୍ରତିପାଳନ ଓ ବାବାଙ୍କ ନିମନ୍ତେ ଯତ୍କିଞ୍ଚିତ୍ ଅର୍ଥ ନେଇ ଜୀବନବ୍ୟାପୀ ସମ୍ମିଳନୀର କାର୍ଯ୍ୟ କରିବେ, ଜାତୀୟ ପାଣ୍ଠିକୁ ୫୨୧ ଦେବେ, କଲେଜର ୪ର୍ଥ ବାର୍ଷିକ ଶ୍ରେଣୀରେ ପଢନ୍ତି ।

୧୨—ବ୍ରଜନାନନ୍ଦ ଦାସ, ଉତ୍କଳ, ଅଧ୍ଯକ ଏକାଦଶାଂଶ ଦେଶ ପାଇଁ ଦେବେ ଏବଂ ସେଥିରୁ ଅନେକ ଦେଶ ପାଇଁ ଯେଉଁମାନେ କାର୍ଯ୍ୟ କରିବାକୁ ପ୍ରସ୍ତୁତ ହେବେ ସେମାନଙ୍କ ଶିକ୍ଷାର ବ୍ୟୟରେ ଓ ଅପର ଅନେକ ଅପଣାର କର୍ମଚାରୀ ଦରିଦ୍ର ଛାତ୍ରମାନଙ୍କ ଶିକ୍ଷାର ବ୍ୟୟରେ ନ୍ୟସ୍ତ ହେବ । ଛୁଟି ପୂଜାଛୁଟିରେ ୨୦ ଦିନ ଏବଂ ବଡ଼ଦିନ ଛୁଟିରେ ୧୦ ଦିନ ସମ୍ମିଳନୀ ପାଇଁ କାର୍ଯ୍ୟ କରିବେ ।

୧୩—ଇନ୍ଦ୍ରମଣି ମହାନ୍ତି, ସଉକଣବା, ଜାତୀୟ ପାଣ୍ଠି ନିମନ୍ତେ ୫୧ ଦେବେ ଏବଂ କଟକ ଷ୍ଟେଟରେ ଜାତୀୟ ପାଣ୍ଠି ନିମନ୍ତେ ଟଙ୍କା ଉଠାଇବାକୁ ଯତ୍ନ କରିବେ ।

୧୪—ଯାଦବେନ୍ଦ୍ର ଦାସ, ଅନନ୍ତପୁର, ବାଲେଶ୍ୱର ଗ୍ରୀଷ୍ମାବକାଶରେ ୨୫ ଦିନ ନିଜ ଗ୍ରାମର ନିକଟବର୍ତ୍ତୀ ଅଞ୍ଚଳରେ କାର୍ଯ୍ୟ କରିବେ ଏବଂ ଜାତୀୟ ପାଣ୍ଠି ନିମନ୍ତେ ୫୧ ଦେବେ ।

୧୫—ତାରାପ୍ରସାଦ ପଟ୍ଟନାୟକ, ଉଷଣ୍ଡପୁର, ଦସଟଙ୍କା ଜାତୀୟ ପାଣ୍ଠିକୁ ଦେବେ ।

୬ । ମାନ୍ୟବର ବାବୁ ବ୍ରଜସୁନ୍ଦର ଦାସ କହିଲେ,—

"ପୂଜ୍ୟପାଦ ଭାଇ ମଧୁବାବୁ ଯାହା କହିଗଲେ ମୁଁ ତାର ଉତ୍ତର ଦେବାକୁ ଦଣ୍ଡାୟମାନ । ଅପଣମାନେ ଦେଶର ଚିତ୍ର ଦେଖିଲେ, ଦେଶର ଅବସ୍ଥା, ଦେଶର ଅଭାବ ଦେଖିଲେ, ଏତେ ଅଭାବ ଅମେ ସମସ୍ତେ ପ୍ରତିଦିନ ଦେଖୁଛୁଁ । ସେଥିରୁ କେଉଁଟା ପ୍ରଧାନ ତାହା ଚିନ୍ତା କରୁ ନାହୁଁ । ସମ୍ମିଳନୀ ଗତ ତେର ଚଉଦ ବର୍ଷ ମଧ୍ୟରେ ଅନେକ ପ୍ରସ୍ତାବ ଅଗତ କରିଅଛନ୍ତି । ଅନେକ କଳ୍ପନା ଜଳ୍ପନା କରି ଅଛନ୍ତି କିନ୍ତୁ କୌଣସିଟା ହାତକୁ ନେଇ ସମ୍ପାଦନ କରି ନାହାନ୍ତି । ଏ ଅମର ଦୋଷ, କୋଷ ଜାଣି ସତ ଧ୍ୟାନ ନ କରିବା ଜାତିର ଉନ୍ନତି ପକ୍ଷେ ଅନ୍ତରାୟ । ଗୋଟିଏ କୌଣସି ନିର୍ଦ୍ଧାରଣ କରି ବର୍ଷକେ ତାହା ସମ୍ପାଦନ କଲେ ଭଲ ହୁଅନ୍ତା । ଜନସ୍ତରର ଲୋକଙ୍କ ଉନ୍ନତି ପ୍ରଧାନ ଅବଶ୍ୟକ କିନ୍ତୁ ଅରେ ଚିନ୍ତା କରନ୍ତୁ ଏ ସମସ୍ତର ମୂଳ ଅର୍ଥାଗମ । ଅର୍ଥ କ ହେଲେ ସମସ୍ତ ବ୍ୟର୍ଥ ମାତ୍ର । ଅର୍ଥ ନ ଥିଲେ କୌଣସି ଜାତୀୟ ଅନୁଷ୍ଠାନ କାର୍ଯ୍ୟରେ ପରିଣତ ହୋଇ ପାରିବ ନାହିଁ । ଜନସାଧାରଣଙ୍କ ଉନ୍ନତି ଲାଗି ଜାତୀୟ ପାଣ୍ଠି ସ୍ଥାପନ ଅବଶ୍ୟକ । ଜାତୀୟ ପାଣ୍ଠି ଗୋଟିଏ କମ୍ପାନୀ ( Company )ର ପାଣ୍ଠିପରି ନୁହେଁ । କୃପାଗ୍ରହ କରିବେ, ଦେଖନ୍ତୁ, କୁଷ୍ଠିକ ବର୍ତ୍ତମାନ ୫୦ । ସୁଦଅଂଶରେ କରି ବିକ୍ରିକ କିନ୍ତୁ ସମୟରେ ୫୧ ଦରରେ ମଧ୍ୟ ସେ ଅଂଶ ବିକ୍ରି କେଉଁ ନାହିଁ । ମଧ୍ୟର ଲୋକେ

(intermediary) ଅର୍ଥାତ୍ ଯୋଃ ଦାଲାଲମାନେ ଖାଉଛନ୍ତି । ଏହି ମଧ୍ୟର ଲୋକଙ୍କୁ ବନ୍ଦ କରି ନ ପାରିଲେ ଏ ନିର୍ବାଚନ ମାତ୍ର ବୃଥା । ବନ୍ଦ କରିବାର ଉପାୟ କଣ ? ଯୋଃ କମ୍ପାନୀ ଟଙ୍କା ଦେଉଅଛି, ଯୋଃ ନେଇ ବିଦେଶରେ ଉଚ୍ଚଦରରେ ବିକୁଛି ଏଣୁ ଜାତୀୟ ପକ୍ଷରୁ ଟଙ୍କା ଦେଇ ଖରିଦାର ହେଲେ ଠିକ୍ ହେବ । ସମସ୍ତେ ଟଙ୍କାଏ ଲେଖାଏ ଦିଅନ୍ତୁ ମୁଠାଏ ଚାଉଳ ଦିଅନ୍ତୁ, ଗୋଟିଏ ବୃହତ୍ ଜାତୀୟ ପାଣ୍ଠି ହେବ । ଜାତୀୟ ପାଣ୍ଠିରୁ କୃଷକକୁ ଟଙ୍କା ଦାଦନ ଦେଇ ଜାତୀୟ ପାଣ୍ଠି ଯୋଃ କିଣି ନେଇ ପାରେ, ତେବେ ଲଭ୍ୟାଂଶ କୃଷକ ପାଇବ, ତେବେ ଯଥାର୍ଥରେ ତାହାର ଉନ୍ନତି ହେବ, ଅନ୍ୟଥା ଅନ୍ୟମାନେ ଯେଉଁମାନେ କିଣିନେବେ ସେହିମାନେ ଲାଭ ପାଇବେ । କୃଷକ ଲଭ୍ୟାଂଶ ପାଇବ ନାହିଁ । ଯେବେ ଜାତିର ମନରେ ବସିଥାଏ, ଗୋଟିଏ ଜାତୀୟ ପାଣ୍ଠି ଦରକାର, ତେବେ ସମସ୍ତେ ସବୁ ସ୍ଥାନରେ ଚେଷ୍ଟା କରନ୍ତୁ, ତେବେ ଆମର ଜାତୀୟ ଲକ୍ଷ୍ମୀ ମନ୍ଦିର ପ୍ରତିଷ୍ଠା ହେବ । ପ୍ରଥମେ ଜାତୀୟ ପାଣ୍ଠି ସ୍ଥାପନର ଚେଷ୍ଟା ଦରକାର । ମୁଷ୍ଟି ଭିକ୍ଷାଦ୍ୱାରା ମଧ୍ୟ ଏ ପାଣ୍ଠି ସ୍ଥାପିତ ହୋଇପାରେ । ତେଣୁ ସବୁ ଆଗେ ଜାତୀୟ ପାଣ୍ଠି ସ୍ଥାପନର ଚେଷ୍ଟା କରି ପରେ ଅନ୍ୟପ୍ରସ୍ତାବରେ ହାତ ଦିଅନ୍ତୁ, ନଚେତ୍ ସମସ୍ତ ହାତ ତାଳରେ ଉଡ଼ିଯିବ ।

ସଭାସ୍ଥଳରେ ଯେ କେତେକ ଟଙ୍କା ଜାତୀୟପାଣ୍ଠି ସକାଶ ସଂଗୃହୀତ ହୋଇଥିଲା ସେମାନଙ୍କର ତାଲିକା ପରିଶିଷ୍ଟରେ ଦିଆଯାଇଅଛି ।

୩ । "ଓଡ଼ିଆ" ସମ୍ପାଦକଙ୍କ ସ୍ୱୀକୃତ ପଦକ ରେଭେନ୍ସା ବାଳିକା ବିଦ୍ୟାଳୟର ଛାତ୍ରୀ ଶ୍ରୀମତୀ କୃଷ୍ଣାବାଳା ସାନ୍ତ ସ୍ତ୍ରୀଶିକ୍ଷାର ଆବଶ୍ୟକତା ସମ୍ବନ୍ଧେ ଉତ୍କୃଷ୍ଟ ପ୍ରବନ୍ଧ ଲେଖିଥିବାରୁ ସଭାପତିଙ୍କ ନିକଟରୁ ପ୍ରଦତ୍ତ ହେଲା ।

କୃତ୍ୟ ନିର୍ବାଚନ ।

ମାନନୀୟ ସଭାପତି ମହୋଦୟ ଏ ପ୍ରସ୍ତାବକୁ ଆଗତ କଲା ପରେ ବିଭିନ୍ନ ଅଞ୍ଚଳର ପ୍ରତିନିଧିମାନେ ନିମ୍ନଲିଖିତ ତାଲିକାମତେ କାଉନ୍ସିଲର ସଭ୍ୟ ପଦରେ ନିଯୁକ୍ତ ହେଲେ ଏବଂ ଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

କାଉନ୍ସିଲର ସଭ୍ୟ ତାଲିକା

କଟକ ।

୧—ମାନ୍ୟବର ରାଜାସାହେବ, କନିକା—ସଭାପତି
୨—ମାନ୍ୟବର ମଧୁସୂଦନ ଦାସ ସି, ଆଇ, ଇ—ସମ୍ପାଦକ
୩—ମାନ୍ୟବର ପଣ୍ଡିତ ଗଣେଶଲାଲ
୪—ଶ୍ରୀଯୁକ୍ତ ବାବୁ ଜଗଦ୍ବଲ୍ଲଭ ଘୋଷ
୫—ଚୌଧୁରୀ ଅଯୋଧ୍ୟାସ୍ୱାମି ଦାଶ ବି, ଏସ, ସି
୬—ମୌଲବି ମୁକୁରମ ଅଲି
୭—ମୌଲବୀ ଶେଖ ମନ୍ସୁର

Digitized by srujanika@gmail.com

୮—ଶ୍ରୀଯୁକ୍ତ ବାବୁ ଗୋବିନ୍ଦପ୍ରସାଦ ବୋଷ
୯— ,, ରାଧାପ୍ରସାଦ ଭଗତ
୧୦—ରାୟ ସୁଦାମଚରଣ ନାୟକ ବାହାଦୁର
୧୧—ଶ୍ରୀଯୁକ୍ତ ବାବୁ ଭଗାସ୍ୱିଚରଣ ପଟ୍ଟନାୟକ
୧୨—ମୌଲବୀ ଅବ୍ଦୁଲ ମଜିଦ
୧୩—ଶ୍ରୀଯୁକ୍ତ ବାବୁ ରାମଚନ୍ଦ୍ର ଦାସ
୧୪— ,, ଦମ୍ବାଧର ଦାସ
୧୫— ,, କୃଷ୍ଣପ୍ରସାଦ ସିଂହ

ପୁରୀ ।

୧—ମହନ୍ତ ଗଦାଧର ରାମାନୁଜ ଦାସ
୨—ଶ୍ରୀଯୁକ୍ତ ବାବୁ ଲୋକନାଥ ମିଶ୍ର
୩— ,, ଜଗବନ୍ଧୁ ସିଂହ
୪—ମାନ୍ୟବର ପଣ୍ଡିତ ଗୋପବନ୍ଧୁ ଦାସ
୫—ଶ୍ରୀଯୁକ୍ତ ବାବୁ ପୀତବାସ ପଟ୍ଟନାୟକ
୬— ,, ଗୋଦାବରୀଶ ମିଶ୍ର
୭— ,, ଚୌଧୁରୀ ନୀଳକଣ୍ଠ ଦାସ
୮— ,, ବ୍ରହ୍ମାନନ୍ଦ ମହାନ୍ତି
୯— ,, ପଣ୍ଡିତ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ
୧୦—ସୟଦ ଅସାନ ଅଲ୍ଲ—ସରବରାକାର, ଖୋର୍ଦ୍ଧା

ବାଲେଶ୍ୱର ।

୧—ଚୌଧୁରୀ ରାମନାରାୟଣ ପ୍ରହରାଜ ମାନଧାତା
୨—ଶ୍ରୀଯୁକ୍ତ ବାବୁ ମୁକୁନ୍ଦପ୍ରସାଦ ଦାସ
୩—ମି: ଅବ୍ଦୁଲ ମଜାନ
୪—ମୌଲବୀ ଶେଖ୍ ମଜାବୁଦ୍ଦିନ
୫—ଶ୍ରୀଯୁକ୍ତ ବାବୁ ଶିବଚରଣ ଦାସ
୬— ,, ବ୍ରଜବଳପ୍ରସାଦ ମହାପାତ୍ର
୭— ,, ରାଧାଶ୍ୟାମ ଦାସ
୮— ,, ରାଧାକାନ୍ତ ପାଢ଼ି

ଗଞ୍ଜାମ ।

୧—ସେକଣ୍ଡ ଲେଃ ରାଜାସାହେବ ପାରଳାଖେମୁଣ୍ଡି
୨—ରାଜାସାହେବ ଧରାକୋଟ
୩—ଯୁବରାଜସାହେବ ଟେକ୍କାଲି
୪—ଶ୍ରୀଯୁକ୍ତ ବାବୁ ହରିହର ପଣ୍ଡା ବି, ଏ

Digitized by srujanika@gmail.com

୫— ଶ୍ରୀଯୁକ୍ତ ବଟକୃଷ୍ଣ ମହାପାତ୍ର, ଭକୀଲ
୬— ,, ଶଶୀଭୂଷଣ ରଥ
୭—ମାନଧାତା ଗୋପଚନ୍ଦ୍ର ପଟ୍ଟନାୟକ
୮—ଶ୍ରୀଯୁକ୍ତ ବାବୁ ମଦନମୋହନ ରଥ ବ, ଏ, ଛତ୍ରପୁର
୯— ,, ନିତ୍ୟାନନ୍ଦ ପଟ୍ଟନାୟକ ବ, ଏ, ପାରଳାଖେମୁଣ୍ଡି
୧୦— ,, ଯୁଗଳକିଶୋର ପାଣିଗ୍ରାହୀ ବ, ଏ

ବଣାଖାପଲ୍ଲନ ।

୧—ସୂର୍ଯ୍ୟମଣି ପଟ୍ଟନାୟକ, ଭଞ୍ଜନଗର
୨—ବଙ୍କମଦେବ ବର୍ମା, ବଣାଖାପଲ୍ଲନ
୩—ହନୁମନ୍ତ ସାଉ ପଟ୍ଟନାୟକ, ଭଞ୍ଜନଗର

ସମ୍ବଲପୁର ।

୧—ଶ୍ରୀଯୁକ୍ତ ବାବୁ ଗଙ୍ଗାଧର ମେହେର

ସିଂହଭୂମ ।

୧—ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ
୨—ବାବୁ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ଭକୀଲ, ଚାଇଁବସା

ଗଡ଼ଜାତ ।

୧—ଶ୍ରୀଯୁକ୍ତ ବାବୁ ଲାଲମୋହନ ପଣ୍ଡା, ବାରିପଦା
୨— ,, ହରିହର ପଟ୍ଟନାୟକ, ନରସିଂହପୁର
୩— ,, ଲିଙ୍ଗରାଜ ଦାସ, ନୟାଗଡ଼

ଚତୁର୍ଥ ନିର୍ଦ୍ଧାରଣ ।

ପ୍ରସ୍ତାବକ ଶ୍ରୀଯୁକ୍ତ ରାଧାକୃଷ୍ଣ ବସୁ ଏମ୍, ଏ ମହାଶୟ ଏ ପ୍ରସ୍ତାବକୁ ଅବଗତ କରିବା ପରେ ଅନୁମୋଦକ ଶ୍ରୀଯୁକ୍ତ ବାବୁ ରମ୍ଭାଧର ଦାସ କହିଲେ :—

" ଉତ୍କଳସମ୍ମିଳନୀ ଗତ ତେରବର୍ଷ ହେଲା ହୋଇଥିଲା ମାତ୍ର ଏହିବର୍ଷ ସମ୍ମିଳନୀରେ ଆପଣମାନେ ଯଥାର୍ଥ ସମ୍ମିଳନୀ ବୋଲି ଜାଣିଲେ । ବର୍ତ୍ତମାନ ବ୍ରଜବାବୁ ଓ ମଧୁବାବୁ ଯେଉଁ ପ୍ରସ୍ତାବମାନ ଅବଗତ କଲେ, ତାହା କାର୍ଯ୍ୟରେ ପରିଣତ କରିବା ସକାଶ କଟକରେ ସମ୍ମିଳନୀ ନ ରହିଲେ ଗୁରୁତର କାର୍ଯ୍ୟମାନ ସାଧିତ ହୋଇ ପାରିବନାହିଁ । ତେଣୁ ମୁଁ ଏ ପ୍ରସ୍ତାବକୁ ଅନୁମୋଦନ କଲି । "

( ସର୍ବସମ୍ମତିକ୍ରମେ ଏ ପ୍ରସ୍ତାବ ଗୃହୀତ ହେଲା )

୫ମ ନିର୍ଦ୍ଧାରଣ ।

ପ୍ରସ୍ତାବକ ଶ୍ରୀଯୁକ୍ତ ବାବୁ କଳ୍ପତରୁ ଦାସ କହିଲେ ;—

ଆମ୍ଭମାନଙ୍କ ଦେଶକୁ ୧୩୯ ହଜାର ମହଣ ଲୁଣ ବିଦେଶରୁ ଆସୁଛି । ତେତକୋଟି ଟଙ୍କାର ଲୁଣ ଜିନିଷ ଆମ୍ଭେମାନେ ବିଦେଶରୁ ଆଣୁଅଛୁଁ ।



Digitized by srujanika@gmail.com

ଯେଉଁମାନଙ୍କର ସାଧାରଣତଃ ବାର୍ଷିକ ଆୟ ଟ ୧୮୯, ସେହିମାନେ ଏ ଟଙ୍କା ଦେଉଅଛନ୍ତି । ମୋତେ ଉତ୍କଳସମ୍ମିଳନୀର କାର୍ଯ୍ୟ ନିର୍ବାହକ ସମିତିର ସମ୍ପାଦକରୂପେ କପାଚାଷ ବ୍ୟବସ୍ଥା ଦେଖିବାକୁ ହେବ । ଏ କାର୍ଯ୍ୟ ସୁଚାରୁରୂପେ ନ ହେଲେ, ସମ୍ପାଦକଙ୍କ ଉପରେ ଗୋଇଠା, ଚାବୁକ । ମୁଁ ଗୋଇଠା, ଚାବୁକ ଖାଇବାକୁ ରାଜି ଅଛି, ମାତ୍ର ମାରିବାର ଲୋକ କାହିଁ ? ଚାବୁକ ଦେଲେ କାର୍ଯ୍ୟ ନଷ୍ଟ ହେବ । ଆମ୍ଭମାନଙ୍କର ଯୁବକ ଛାତ୍ରମାନଙ୍କର ଆଖି ଫିଟିଅଛି, ଆମ୍ଭେମାନେ କିଛି କରି ପାରୁ ନାହୁଁ ସତ୍ୟ, ମାତ୍ର ସେମାନେ ଅଗ୍ରସର ହେଲେ ଉନ୍ନତିର ବାଧା ଘଟିବ ନାହିଁ । କପାଚାଷ ବଡ଼ କଷ୍ଟସାଧ୍ୟ, ଏଥିରେ ତରକାରି ଚାଷ କରିବାକୁ ହୁଏ । ବର୍ତ୍ତମାନ ଦୁରବସ୍ଥା ସମୟ, ତେଣୁ କୃଷକ ଏ କାର୍ଯ୍ୟ କରିବାକୁ ରାଜି ନୁହେଁ । କିନ୍ତୁ ବର୍ତ୍ତମାନ ବିଦେଶରୁ ମାଲ ପାଇବାର ଉପାୟ ନାହିଁ । ବର୍ତ୍ତମାନ ଆମଦେଶରେ ଅନେକ ପରିମାଣରେ ସ୍ୱଦେଶୀ ଜିନିଷ ଅଛି । ମୋଟାଲୁଗା ଓଡ଼ିଶାକୁ ନାଗପୁର ମିଲ୍‌ରୁ ଆସେ, କାରଣ ସେଠାରେ ବ୍ୟବସାୟୀମାନେ ବୁଝିପାରନ୍ତି—ଓଡ଼ିଶାର ଲୋକେ କି ପ୍ରକାର ଲୁଗା ଚାହାନ୍ତି । କପା ହେଲେ ତୁଳା ହେବ, ସେଥିରେ ଦେଶର ସୂତା ଓ ଲୁଗା ହେବ । ଦେଶର ଲୁଗାବୁଣା ଯନ୍ତ୍ର ଚଳିବ । ବର୍ତ୍ତମାନ ଦେଶର ଯୁବକଙ୍କ ଉଦ୍ୟମ ମଧ୍ୟ ଅନୁକୂଳ । ଶ୍ରୀରାମପୁରଠାରେ ଦୁଇଜଣ ଯୁବ ବୟନ ବିଦ୍ୟାରେ କୃତିତ୍ୱ ଦେଖାଇଅଛନ୍ତି ।

ଅନୁମୋଦକ—ଶ୍ରୀଯୁକ୍ତ ଲାଲମୋହନପଟ ମହାଶୟ କହିଲେ :—

ସମୟ ପାଞ୍ଚମିନିଟ୍, କିନ୍ତୁ ବିଷୟ ଗୁରୁତର, ତଥାପି ନିୟମ ଓ ଶୃଙ୍ଖଳାମଧ୍ୟରେ ସମସ୍ତେ ବାଧ୍ୟ ହେବା ଉଚିତ । ତେଣୁ ମୁଁ ଶୀଘ୍ର ମୋର ବକ୍ତବ୍ୟ ଶେଷ କରିବି । କପାଚାଷ ଆମଦେଶରେ ଯଥେଷ୍ଟ ଥିଲା, ବର୍ତ୍ତମାନ ତା'ର ଆଦର କମିଅଛି; କିନ୍ତୁ ଏଥିର ଅଭାବ ସମସ୍ତେ ଅନୁଭବ କରୁଅଛୁଁ । ବର୍ତ୍ତମାନ ଲୁଗାର ଦୁର୍ମୂଲ୍ୟତା ସମସ୍ତେ ବୁଝିଅଛନ୍ତି । ଏତଦ୍‌ପେକ୍ଷା କପାଚାଷର ପ୍ରୟୋଜନୀୟତା ବୁଝାଇବାର ଅଧିକ ଉପାୟ କ'ଣ ? ସମ୍ମିଳନୀର କାର୍ଯ୍ୟ ନିର୍ବାହକ ସମିତିଉପରେ ଭାରଦେଇ ବସିଲେ ଚଳିବ ନାହିଁ । ମାତ୍ର ସମ୍ମିଳନୀ ଯଦି ଏତିକି କରନ୍ତି କପାଚାଷ ପ୍ରଣାଳୀ, ସ୍ଥାନ ନିରୂପଣ ଏବଂ ବୀଜବଣ୍ଟନ କରିପାରନ୍ତି ତେବେ ଯଥେଷ୍ଟ ହେବ । ମାତ୍ର କାର୍ଯ୍ୟ ନିର୍ବାହକ ସମିତି ଉପରେ ନିର୍ଭର କରି ବସିଲେ ହେବ ନାହିଁ । କପାଚାଷଦ୍ୱାରା ଆର୍ଥିକ ଲାଭ ଖୁବ୍ । ମୁଁ ଏତିକି ଅନୁରୋଧ କରେଁ କାର୍ଯ୍ୟନିର୍ବାହକ ସମିତି ଉପରେ ନିର୍ଭର ନ କରି ନିଜଉପରେ ନିର୍ଭର କରନ୍ତୁ । ଆପଣମାନଙ୍କ ସମ୍ମିଳିତଚେଷ୍ଟା ସମ୍ମିଳନୀକୁ ସାହାଯ୍ୟ କରିବ ମାତ୍ର ।

( ଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା । )

ଷଷ୍ଠ ନିର୍ଦ୍ଧାରଣ

ଶ୍ରୀଯୁକ୍ତ ବାବୁ ଜଗବନ୍ଧୁସିଂହ ଏ ନିର୍ଦ୍ଧାରଣକୁ ଉପଗତ କରି କହିଲେ :

ଗତବର୍ଷ ବାଲେଶ୍ୱର ସମ୍ମିଳନୀରେ ମୁଁ ଠିକ୍ ଏହି ପ୍ରସ୍ତାବ ଉପଗତ କରିଥିଲି ।

Digitized by srujanika@gmail.com

ଏ ବର୍ଷ ମଧ୍ୟ ମୁଁ ସେହି ପ୍ରସ୍ତାବକୁ ପୁଣି ଥରେ ଆପଣମାନଙ୍କ ସମକ୍ଷରେ ଆଗତ କରୁଅଛି । ଲୁଣ ଗୋଲ୍ଲାମ ଉଠିଯିବାଦ୍ୱାରା ଅନେକ ଲୋକ କଷ୍ଟ ପାଉଛନ୍ତି । ପାରିକୁଦର ଅବସ୍ଥା ବର୍ତ୍ତମାନ ଅତୀବ ଶୋଚନୀୟ । ଏ ବିଷୟରେ ଖବରକାଗଜ ମାନଙ୍କରେ ଆନ୍ଦୋଳନ ହୋଇଅଛି । ମୋର ଶ୍ରଦ୍ଧାସ୍ପଦ ଗୋପବନ୍ଧୁ ବାବୁ ସ୍ୱର୍ଗ ବକ୍ତୃତାଦ୍ୱାରା ଲାଟସାହେବଙ୍କ ସମ୍ମୁଖରେ ଏ ପ୍ରସ୍ତାବ ଆଗତ କରିଥିଲେ, ସେ ସରକାରଙ୍କୁ ଏ ବିଷୟ ବୁଝାଇବାରୁ ସରକାର ଏଥିପ୍ରତି ଦୃଷ୍ଟି ଦେବାର ଆଶା ଦେଇ ଅଛନ୍ତି । ଲୁଣ ଗୋଲ୍ଲାମର ଆବଶ୍ୟକତା ବୁଝାଇବାର ଆବଶ୍ୟକ ନାହିଁ, ସରକାର ଆଶା ଦେଇଅଛନ୍ତି ଯେ ପୁନର୍ବାର ଓଡ଼ିଶାର ଉପକୂଳରେ ଲବଣ ଗୋଲ୍ଲାମ ହେବ । ସେଥି ସକାଶେ ଆମ୍ଭେମାନେ ସରକାରଙ୍କୁ ଧନ୍ୟବାଦ ଅର୍ପଣ କରୁଅଛୁଁ । ସରକାରଙ୍କ ସମ୍ମୁଖରେ ଜଣେ—ଗୋପବନ୍ଧୁ ବାବୁ କହିଥିଲେ, ମାତ୍ର ଆମ୍ଭେମାନେ ଏଠାରେ ସମସ୍ତେ ଏକସ୍ୱରରେ ସେହିକଥା କହିଲେ ଗୋପବନ୍ଧୁବାବୁଙ୍କ କଥା ବଳବତ୍ତର ହେବ ।

ମୌଲବୀ ସେଖ ମନୀରୁଦ୍ଦୀନ ଏ ପ୍ରସ୍ତାବକୁ ଅନୁମୋଦନ କରି କହିଲେ :— ମାନନୀୟ ସଭାପତି ଓ ସଭ୍ୟବୃନ୍ଦ,

ପ୍ରତ୍ୟେକ ଧର୍ମାବଲମ୍ବୀଙ୍କୁ ମାନିବାକୁ ପଡ଼ିବ ଯେ ଜଗତ୍ ସୃଷ୍ଟିକର୍ତ୍ତା ଜଗଦୀଶ୍ୱରଙ୍କର ସୃଷ୍ଟିକାର୍ଯ୍ୟ ସମ୍ପୂର୍ଣ୍ଣରୂପେ ଦୋଷଶୂନ୍ୟ । ସଂସାରରେ ଯେତେ ବିଦ୍ୱାନ୍ ଓ ଜ୍ଞାନୀ ଅଛନ୍ତି, ସୃଷ୍ଟିକର୍ତ୍ତାଙ୍କର ସୃଷ୍ଟିକାର୍ଯ୍ୟରେ କୌଣସି ପ୍ରକାର ତ୍ରୁଟି କେହି ଦେଖାଇ ପାରିବେ ନାହିଁ । ପୁଣି ସେହି ସୃଷ୍ଟିକର୍ତ୍ତା ଏତେଦୂର ଦୟାବାନ୍ ଯେ ସୃଷ୍ଟ ଜୀବର ଯେତେବେଳେ ଯାହା ଯାହା ଆବଶ୍ୟକ, ସେ ସମୁଦାୟ ସେ ଯୋଗାଇ ଦିଅନ୍ତି । ସନ୍ତାନର ଜନ୍ମ ପୂର୍ବରୁ ତାହାର ମାତାର ସ୍ତନରେ ଦୁଗ୍ଧ ଦିଅନ୍ତି ଏବଂ ଜନ୍ମହେଲା ପରେ ଯାହା ଯାହା ଦରକାର ସେ ସକଳ ସେ ପୂରଣ କରିଦିଅନ୍ତି । ତାହାଙ୍କର ପ୍ରତ୍ୟେକକାର୍ଯ୍ୟରେ କିଛି ନା କିଛି ଜ୍ଞାନପୂର୍ଣ୍ଣ ଗୂଢ଼ ଉଦ୍ଦେଶ୍ୟ ନିହିତ ଥାଏ । ପ୍ରତ୍ୟେକଲୋକର ଜୀବନ ଧାରଣ ସକାଶେ ଯେଉଁ ଯେଉଁ ପଦାର୍ଥ ଗୁଡ଼ିକର ପ୍ରୟୋଜନ, ସେ ସମୁଦାୟ ପଦାର୍ଥ ଗୁଡ଼ିକ ସେ ନିଜେ ଉତ୍ପନ୍ନ କରି ନ ପାରେ । ସୁତରାଂ ସଂସାରରେ ବିନିମୟ ପ୍ରଥାର ପ୍ରୟୋଜନ ।

ଉତ୍କଳର ଉତ୍ପନ୍ନପଦାର୍ଥ ମଧ୍ୟରେ ଦୁଇଟି ପ୍ରଧାନ—ଧାନ୍ୟ ଓ ଲବଣ । ଏଥିରୁ ସ୍ପଷ୍ଟ ବୁଝାଯାଉଅଛି ଯେ " ଏହି ଦୁଇଟି ଉତ୍ପନ୍ନ ପଦାର୍ଥର ସାହାଯ୍ୟରେ ଓଡ଼ିଶା ନିଜର ସମୁଦାୟ ଅଭାବ ଦୂର କରୁ " ଏହାହିଁ ଦୟାମୟ ସୃଷ୍ଟିକର୍ତ୍ତାଙ୍କର ଉଦ୍ଦେଶ୍ୟ । ଜୀବିକା ନିର୍ବାହର ଦୁଇଟି ମାତ୍ର ଉପାୟ ଥିବାସ୍ଥଳରେ ଗୋଟିକର ସଦ୍‌ବ୍ୟବହାର ଓ ଅପରଟିର ଅପବ୍ୟବହାର ବା ଅବ୍ୟବହାର କଲେ ଯେଉଁ କଷ୍ଟ ଭୋଗିବା ସ୍ୱାଭାବିକ, ସେହି କଷ୍ଟଦାୟକ ପରିମାଣ ବର୍ତ୍ତମାନ ଓଡ଼ିଶାକୁ ଲୁଣ ଗୋଲ୍ଲାମ ବନ୍ଦ ହୋଇ ଯାଇଥିବାରୁ ଭୋଗିବାକୁ ପଡ଼ୁଅଛି । ଓଡ଼ିଶାର ଆର୍ଥିକ ଅବସ୍ଥା ଦିନକୁ ଦିନ ଶୋଚନୀୟରୁ ଶୋଚନୀୟତର ହେଉଅଛି । ଲୁଣଗୋଲ୍ଲାମ ବନ୍ଦହୋଇ

Digitized by srujanika@gmail.com

ଯାଉଥିବାରୁ ତାହାର ବିଷମୟ ଫଳ ବର୍ତ୍ତମାନ ଓଡ଼ିଶାର କି ଧନୀ, କି ଦରିଦ୍ର, କି ମଧ୍ୟବିତ୍ତ ବ୍ୟକ୍ତି ସମସ୍ତଙ୍କୁ ଭୋଗ କରିବାକୁ ପଡୁଅଛି । ମାତ୍ର ଏହି ଲୁଣ ଗୋଲ୍ଲାନ ବନ୍ଦ ହେବାର କାରଣ ଉତ୍କଳବାସିଙ୍କର ଅଳସ୍ୟ ବା ଶ୍ରମକାତରତା ନୁହେ । ଅମ୍ଭମାନଙ୍କର ମାନନୀୟ ଗଭର୍ଣ୍ଣମେଣ୍ଟ ଏହି ଲୁଣ ଗୋଲ୍ଲା'ନ ଓଡ଼ିଶାରୁ ଉଠାଇ ଦେଇ ଅଛନ୍ତି, ଯାହାଯୋଗୁଁ ଅମ୍ଭେମାନେ ଅଶେଷ ପ୍ରକାରରେ କଷ୍ଟ ପାଇବାକୁ ହେଉଅଛି । ବିଚକ୍ଷଣ ରାଜନୀତିଜ୍ଞ ବ୍ରିଟିସ ଗଭର୍ଣ୍ଣମେଣ୍ଟ କାହିଁକି ଓଡ଼ିଶାରୁ ଲୁଣଗୋଲ୍ଲାନ ଉଠାଇ ଦେଇଅଛନ୍ତି, ସେ ବିଷୟ ଆଲୋଚନା କରିବାର ଅଧିକାର ଅମ୍ଭମାନଙ୍କର ନାହିଁ । ସେ ଶାସକ' ଓ ଅମ୍ଭେମାନେ ଶାସିତ, ଶାସକଙ୍କ କାର୍ଯ୍ୟ ପର୍ଯ୍ୟାଲୋଚନା କରିବା ଶାସିତ ପକ୍ଷରେ ଉଚିତ ନୁହେ ବା ତାହା କରିବାକୁ ତାହାର ଅଧିକାର ନାହିଁ । ଏକମାତ୍ର କାର୍ଯ୍ୟ ଯାହା ଶାସିତ କରିପାରେ ତାହା କେବଳ ଏହା—ସମ୍ମାନ ଓ ବିନୟ ସହିତ ନିଜର ଗୁହାରି ଶାସକଙ୍କର ଗୋଚରକୁ ଆଣିବା । ଶାସିତର ଗୁହାରି ଶୁଣିବା ନଶୁଣିବା, ମଞ୍ଜୁର କରିବା ବା ନକରିବା ଶାସକଙ୍କର କାର୍ଯ୍ୟ । ଅତଏବ ଅମ୍ଭମାନଙ୍କର ଉଚିତ ଯେ ଆପଣାର ଏହି କଷ୍ଟ ଓ ଅଭାବ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବୁଁ । ଛୁଆ ନ କାନ୍ଦିଲେ ମା'ଦୁଧ ଦିଏ ନାହିଁ, ମେଘ ନ କାନ୍ଦିଲେ ଉଦ୍ଭିଦ ଜାତ ହୁଏ ନାହିଁ, ସେହିପରି ପ୍ରଜାମାନେ ନ କାନ୍ଦିଲେ ରାଜା ପ୍ରଜାଙ୍କର ଦୁଃଖ ଦୂର କରିବାକୁ ସଯତ୍ନ ହୁଅନ୍ତି ନାହିଁ । କେହି କହିପାରନ୍ତି ଯେ ଅମ୍ଭେମାନେ ଏଥିସକାଶେ ଅନେକଥର ଆବେଦନ ନିବେଦନ କରିଅଛୁଁ ମାତ୍ର କୌଣସି ସୁଫଳ ଫଳିନାହିଁ । ଏଥର କଲେ ବା କିଣ ଫଳ ହେବ ? ମାତ୍ର ତାହାଙ୍କର ମନେ ରଖିବା ଉଚିତ ଯେ ତାଙ୍କ ପାଖକୁ ଜଣେ ଭିକ୍ଷୁକ ଆସିଲେ ଓ ନିଜେ କୌଣସି କାର୍ଯ୍ୟରେ ବ୍ୟସ୍ତ ଥିବା ହେତୁ ସେହି ଭିକ୍ଷୁକକୁ ଭିକ୍ଷା ନ ଦେଇ ଫେରି ଯିବାକୁ କହିଲେ ସେ ଯଦି ଚାଲି ନ ଯାଇ ବାରମ୍ବାର ତାହାକୁ ମାଗୁଥାଏ, ସେତେବେଳେ ସେ ନିଜେ ନିତାନ୍ତ ବିରକ୍ତ ହୋଇ ତାଠାରୁ ଆପଣାକୁ ରକ୍ଷା କରିବାକୁ ମଧ୍ୟ ତାକୁ କିଛି ଦେଇ ବିଦାୟ କରିଦିଅନ୍ତି । ଭିକ୍ଷୁକଟି ବାରମ୍ବାର ନ ମାଗି ଚାଲି ଯାଇଥିଲେ କେବେହେଁ ତାହା ପାଇ ପାରନ୍ତା ନାହିଁ । ସେହିପରି ଅମ୍ଭେମାନେ ଯଦି ନିଜର ମନସ୍କାମନା ପୂର୍ଣ୍ଣ ନ ହେବା ଯାଏ ବାରମ୍ବାର ଦୟାଶୀଳ ଗଭର୍ଣ୍ଣମେଣ୍ଟଙ୍କୁ ନିଜର ଅଭାବମାନ ଜଣାଉଁ ତାହାହେଲେ ନିଶ୍ଚୟ ଦିନେ ନା ଦିନେ କୃତକାର୍ଯ୍ୟ ହେବୁଁ, ଏଥିରେ କିଛି ମାତ୍ର ସନ୍ଦେହ ନାହିଁ । ଏହା ଛଡ଼ା ଅମ୍ଭମାନଙ୍କର ଜାଣି ରଖିବା ଉଚିତ ଯେ ସଂସାରର ପ୍ରତ୍ୟେକ କାର୍ଯ୍ୟର ମୂଳରେ ସୃଷ୍ଟିକର୍ତ୍ତାଙ୍କର ଇଚ୍ଛା ଗୋପନରେ ଥାଏ । ତାଙ୍କର ଇଚ୍ଛା ନ ଥିଲେ କୃତକାର୍ଯ୍ୟ ଅସମ୍ଭବ । ଅତଏବ ଅମ୍ଭମାନଙ୍କର ଉଚିତ ଯେ ସମସ୍ତେ ଦୟାମୟଙ୍କ ନିକଟରେ ପ୍ରାର୍ଥନା କରିବା, ତାହାହେଲେ ସେ ଗଭର୍ଣ୍ଣମେଣ୍ଟଙ୍କ ମନରେ ଦୟାର ସଞ୍ଚାର କରିଦେବେ ଏବଂ ଅମ୍ଭେମାନେ କୃତକାର୍ଯ୍ୟ ହେବା । ଅତଏବ ମୁଁ ଅନ୍ତଃକରଣସହିତ ଏହି ପ୍ରସ୍ତାବଟି ଅନୁମୋଦନ କରୁଅଛି ।

Digitized by srujanika@gmail.com

ଶ୍ରୀଯୁକ୍ତ ବାବୁ ପାରେଶ୍ୱର ମହାନ୍ତି ବି, ଏଲ କହିଲେ :—

ଭାଇମାନେ,

ମୁଁ ଜଣେ ତଳଘଣ୍ଟ ମଣିଷ, ସମୁଦ୍ରରେ ଜୁଆର ହେଲେ ଆମ ଘର ପାଖକୁ ନଈରେ ଲୁଣା ପାଣି ଆସେ । ଖରା ଦିନେ ଲୁଣା ମାଟି ଉପରେ ଲୁଣ ଫୁଟି ବାହାରେ । ଏକ ସମୟରେ ଆମ ଅଞ୍ଚଳରେ ପାଣ, କଣ୍ଡରାମାନେ ଲୁଣମାରି ନିଜେ ପୋଷି ହେଉଥିଲେ, ଆପଣାର ଖର୍ଚ୍ଚ ମଧ୍ୟ ଚଳାଉଥିଲେ । ଆଜି କାଲି ସେମାନେ ଲୁଣ କିଣି ଖାଉଅଛନ୍ତି । ଏଥି ଉପରେ ସେମାନଙ୍କର ଜୀବିକା ମଧ୍ୟ ବୁଡ଼ିଅଛି । ସେମାନଙ୍କର ଗୋଟିଏ ଜୀବନ ଉପାୟ ବାହାରି କରି ନିଆଯାଇ ତାହା ବଦଳରେ ସେମାନଙ୍କୁ ଆଉ କିଛି ଦିଆ ଯାଇ ନାହିଁ—ତେଣୁ ଆଜି କାଲି ଲୁଣ ଓ ଲୁଗା ମହରଗ ସମୟରେ ସେମାନଙ୍କର କଷ୍ଟ ସହଜରେ ଅନୁମାନ କରି ଯାଇପାରିବ—ବିଶେଷତଃ ଆମ୍ଭ ଦେଶରେ ଅଧିକାଂଶ ଲୋକେ ପଖାଳ ଖାଆନ୍ତି, ପଖାଳ ସଙ୍ଗରେ ଲୁଣଟା କପରି ଆବଶ୍ୟକ ତାହା କୌଣସି ଓଡ଼ିଆଙ୍କୁ କହି ଦେବାକୁ ହେବ ନାହିଁ । ଅନ୍ୟରୁ ମଧ୍ୟ ଗରିବ ଲୋକମାନେ ସାଧାରଣତଃ ପରିବା କିଣି ନ ପାରି ଲୁଣ ଉପରେ ନିର୍ଭର କରି ଚଳନ୍ତି । ଏପରି ସ୍ଥଳେ ପାଖରେ ଲୁଣ ମାଟି ଓ ଲୁଣା ପାଣି ଥାଉଁ ଥାଉଁ ଲୁଣ ମାରିବାକୁ କପରି କଷ୍ଟକର ତାହା ସହଜରେ ବୁଝି ହେବ । ସରକାରଙ୍କ ଠାରେ କୌଣସି ବିଷୟ ଦେଇ ଗୁହାରି କଲେ କହନ୍ତି ତହିଁରେ ସାଧାରଣ ଲୋକଙ୍କର ମତ ନାହିଁ କେବଳ କେତେ ଜଣ ଶିକ୍ଷିତ ଲୋକ ନାନାଦି ଆପତ୍ତି ଉଠାଉଅଛନ୍ତି, ତେଣୁ କରି ଏ ପ୍ରସ୍ତାବ ସମ୍ମିଳନୀରେ ଉଠିଅଛି । ଯେବେ ଆପଣମାନେ ଏ ପ୍ରସ୍ତାବରେ ଏକମତ ହୁଅନ୍ତି ତାହାହେଲେ ସରକାର ଜାଣିବେ ଯେ ସାଧାରଣ ଲୋକେ ଏଥିରେ ଏକମତ ଅଟନ୍ତି, ତେଣୁ ଏ ପ୍ରସ୍ତାବକୁ ମୁଁ ସମର୍ଥନ କରୁଅଛି ।

( ଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତହେଲା )

ଅଷ୍ଟମ ନିର୍ଦ୍ଧାରଣ

ଶ୍ରୀମାନ୍ ରାଜାସାହେବ ଧରାକୋଟ, ଏ ପ୍ରସ୍ତାବକୁ ଆଗତ କରି କହିଲେ :—

ଗଭର୍ଣ୍ଣମେଣ୍ଟଙ୍କୁ ଦେଶ ମିଶଣ ବିଷୟ ଆମ୍ଭେମାନେ ଅନେକଥର ବୁଝାଇ ଥିଲେ ମଧ୍ୟ ସେ ନ ବୁଝିବାର ଦୁଃଖର ବିଷୟ । ସ୍ଥାନେ ସ୍ଥାନେ ସଭା ସମିତି କରି ଗଭର୍ଣ୍ଣମେଣ୍ଟଙ୍କୁ ଦେଶର ମତ ଜଣାଇଲେ ଏହାର ଗୁରୁତ୍ୱ ସେ ଅବଶ୍ୟ ବୁଝିପାରିବେ । କେବଳ ତାର ଯୋଗେ ଗଭର୍ଣ୍ଣମେଣ୍ଟଙ୍କୁ ଦେଶର ମତ ଜଣାଇଥିବାରୁ ସେ ଠିକ୍ ବୁଝିପାରି ନାହାନ୍ତି ବା ବୁଝିଲେ ମଧ୍ୟ କାର୍ଯ୍ୟରେ ପରିଣତ କରି ନାହାନ୍ତି । ଉପସ୍ଥିତ ସମସ୍ତେ ଦେଶ ମିଶ୍ରଣର ଉପକାରିତା ବୁଝିଛନ୍ତି ତେଣୁ ଅଧିକ କହିବା ଅନାବଶ୍ୟକ ।

ମାନ୍ଧାତା ଗୋରଚନ୍ଦ୍ର ପଟ୍ଟନାୟକ ମହାଶୟ ଏ ପ୍ରସ୍ତାବକୁ ଅନୁମୋଦନ କରି କହିଲେ,—

ଏ ପ୍ରସ୍ତାବ ଅନେକ ଥର ଆଲୋଚିତ ହୋଇଅଛି । ବିଶେଷ ଆଲୋଚନା ନିଷ୍ପ୍ରୟୋଜନ । ଏ ସମ୍ମିଳନୀର ସୃଷ୍ଟି ଏହି ଓଡ଼ିଆ ଭାଷୀ ପ୍ରଦେଶ ଏକୀଭୂତ କରଣ

Digitized by srujanika@gmail.com

ଲାଗି । ସମସ୍ତ ଓଡ଼ିଆ ଭାଷୀ ପ୍ରଦେଶ ଏକତ୍ର ନ ହେବା ଯାଏ, ଏହି ସମ୍ମିଳନୀର ନାମ Utkal Union Conference ହୋଇଥିବ । ତାପରେ ଏ ନାମର ପରିବର୍ତ୍ତନ ହେବା ଦରକାର ହେବ । ସଭାର କାର୍ଯ୍ୟ ପ୍ରଜାରଞ୍ଜନ, ତେଣୁ ଆମ୍ଭେମାନେ ସାମାଜିକ ସୂତ୍ରରେ ଆବଦ୍ଧ ହେଲେ ଗଭର୍ଣ୍ଣମେଣ୍ଟଙ୍କ ଶାସନ ପ୍ରଣାଳୀ ଅବଶ୍ୟ ପରିବର୍ତ୍ତିତ ହେବ । ଗଭର୍ଣ୍ଣମେଣ୍ଟ ଏ ସମ୍ବନ୍ଧେ ଏକାବେଳେକେ ଉଦାସୀନ ନୁହନ୍ତି । ଗଭର୍ଣ୍ଣମେଣ୍ଟ ଏ ମୂଳ ରୋଗର ପ୍ରତୀକାର ନ କରି ମାନ୍ଦ୍ରାଜ ଅଞ୍ଚଳରେ ଏଥିର ଔପସର୍ଗିକ ରୋଗର ପ୍ରତୀକାର କରୁଅଛନ୍ତି । ଯଥା—ଖଲ୍ଲିକୋଟ କଲେଜକୁ First Grade College କରିବାର ଚେଷ୍ଟା ହେଉଅଛି । ଖଲ୍ଲିକୋଟ କଲେଜ ଫାଷ୍ଟଗ୍ରେଡ଼ ହେଲେ ଓଡ଼ିଆଙ୍କର ବିଶେଷ ଉପକାର ହେବ ନାହିଁ । ଆମ୍ଭମାନଙ୍କ ଆନ୍ଦୋଳନର ଭିତ୍ତିକୁ ସମାଧାନ କରିବା ଲାଗି ସରକାର ଏପରି ଚେଷ୍ଟା କରୁଅଛନ୍ତି । ମାତ୍ର ଆମ୍ଭମାନଙ୍କର ଏ ଆନ୍ଦୋଳନରୁ କ୍ଷାନ୍ତ ହେବା ଉଚିତ ନୁହେଁ । ଗଞ୍ଜାମର ବହୁଳ ଅଞ୍ଚଳରେ ଓଡ଼ିଆ ଭାଷା ପ୍ରଚଳନ ହୋଇଅଛି, ମାତ୍ର ସେଥି ସଙ୍ଗେ ସଙ୍ଗେ ଆମ ଆନ୍ଦୋଳନ ତୀବ୍ରଭାବରେ ହେବା ଉଚିତ—ଯେପରି କି ସେ ଆନ୍ଦୋଳନର ତୀବ୍ରତା ଦ୍ୱାରା ସରକାରଙ୍କ ଆସନ କମ୍ପିବ । ସେ ଆମ୍ଭମାନଙ୍କ ପ୍ରାର୍ଥନା ପୂରଣ କରିବେ ।

ଶ୍ରୀଯୁକ୍ତ ବାବୁ ରେବତୀକାନ୍ତ ଘୋଷ ଏ ପ୍ରସ୍ତାବକୁ ସମର୍ଥନ କରି କହିଲେ,

ଏ ବିଷୟ ଅନେକବାର ଆଲୋଚିତ ହୋଇଅଛି, ତଥାପି ଏ ସମସ୍ତ ଉତ୍କଳ ଭାଷୀ ପ୍ରଦେଶ ଏକତ୍ର ନ ହେବାଯାଏ ଆମ୍ଭମାନଙ୍କର ଏ ଆପତ୍ତି ସରକାରଙ୍କ ନିକଟରେ ଉତ୍ଥାପନ କରିବା ଉଚିତ । ଗଞ୍ଜାମ ଭାଇମାନେ ଏଥିରେ ସମ୍ପୂର୍ଣ୍ଣ ଆଗ୍ରହ ପ୍ରକାଶ କରୁଥିଲେ ମଧ୍ୟ ଅନ୍ୟ ପ୍ରଦେଶର ଭାଇମାନେ ଏ ବିଷୟରେ କିପରି ଇଚ୍ଛୁକ ତାହା ଅନୁସନ୍ଧାନ କରିବା ଉଚିତ । ଆମ୍ଭେମାନେ ସମସ୍ତେ ଯଦି କହିବା ଆମ୍ଭେମାନେ ଏକ ଶାସନାଧୀନରେ ରହିବା, ଗଭର୍ଣ୍ଣମେଣ୍ଟ କି ହେତୁରୁ ମନା କରିବେ ? ଗଭର୍ଣ୍ଣମେଣ୍ଟଙ୍କର ମନା କରିବାର କିଛି କାରଣ ନାହିଁ, ତେବେ ଆମ୍ଭମାନଙ୍କର ବର୍ତ୍ତମାନ ଅନୁସନ୍ଧାନ କରି ଉଚିତ ଯେ କେଉଁ କେଉଁ ଉତ୍କଳ ଭାଷୀ ଅଞ୍ଚଳ ଏ ପ୍ରକାର ମିଶ୍ରଣ ଚାହାନ୍ତି । ଏ ବିଷୟର ଗୁରୁତ୍ୱ ଅନେକେ ଅନୁଭବ କରୁଅଛନ୍ତି, ସେ ସମ୍ବନ୍ଧେ ବିଶେଷ କିଛି ବୁଝାଇବା ଆବଶ୍ୟକ ନାହିଁ । ସମ୍ମୁଖରେ ଏହି ଯେ ଛବି Mother Utkal ଏବଂ daughter in exile ଏବଂ ସେମାନଙ୍କୁ ତଫାତରେ ରଖିଅଛି Gulf of administration ଏଥିରୁ ଏକଥା ବେଶ୍ ସ୍ପଷ୍ଟ ବୁଝାଯିବ ଯେ ଆମ୍ଭମାନଙ୍କର ଏହି ଓଡ଼ିଆ ଭାଷୀ ପ୍ରଦେଶମାନଙ୍କୁ ଏକତ୍ର କରିବା କେତେଦୂର ଆବଶ୍ୟକ ।

ଏ ବିଷୟରେ ନାନା ଅନୁସନ୍ଧାନ ଆବଶ୍ୟକ । ସମ୍ମିଳନୀର Council ଏବଂ Executive Committee ଏ ବିଷୟ ଅନୁସନ୍ଧାନ କରି ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବେ । ଯେଉଁ ପ୍ରଦେଶର ଓଡ଼ିଆମାନେ ଏକ ଶାସନାଧୀନରେ ରହିବା ଇଚ୍ଛା କରୁଅଛନ୍ତି । ସମସ୍ତ ଓଡ଼ିଆ ଭାଷୀ ପ୍ରଦେଶ

Digitized by srujanika@gmail.com

ଏକାଠି ନ ହେବାଯାଏ ଆମ୍ଭମାନଙ୍କର ଆନ୍ଦୋଳନ ଏହିପରି ଚଳୁ ! ଯେପରି ଦେହର ହାତ, ଗୋଡ଼, ମୁଣ୍ଡ ଭିନ୍ନ ସ୍ଥାନରେ ଥିଲେ କିଛି ହେବ ନାହିଁ । ସୁତରାଂ ଯାହା ଆମ୍ଭେମାନେ କହୁଁ ତାହା ଅତି ଯୁକ୍ତିଯୁକ୍ତ । ମାତ୍ର ପୂର୍ବେ ଭୁଲବଶତଃ ଯେ ବନ୍ଧୁବର ଯେ Executive ହୋଇ ଏହା କହିଛନ୍ତି, ଏକଶାସନାଧୀନରେ ଆମ୍ଭମାନଙ୍କର ରହିବା ଦରକାର । ବଙ୍ଗଳା ସଙ୍ଗେ ସେ ଏକଶାସନାଧୀନ ରହିବ କି ମାନ୍ଦ୍ରାଜ ସଙ୍ଗେ ରହିବ କି ସ୍ୱତନ୍ତ୍ର ରହିବ ସେ ଅଲଗା କଥା ।

ମୌଲବୀ ଶେଖ୍ ଅସଦୁଲ୍ଲା ସମର୍ଥନ କରି କହିଲେ :—

ଯେପର୍ଯ୍ୟନ୍ତ ଉତ୍କଳଭାଷୀମାନେ ଏକାଠି ନ ହେବେ, ସେପର୍ଯ୍ୟନ୍ତ ଗଭର୍ଣ୍ଣ-ମେଣ୍ଟଙ୍କୁ ଆମ୍ଭେମାନେ ରାଜଭକ୍ତି ଦେଖାଇପାରିବୁ ନାହିଁ କିମ୍ବା ପରସ୍ପରଙ୍କୁ ସାହାଯ୍ୟ କରିବାକୁ ସକ୍ଷମ ହେବୁ ନାହିଁ, କାରଣ ଆମର ହାତ ଗୋଡ଼ ଭିନ୍ନ ସ୍ଥାନରେ ଥିବାରୁ ଆମେ କର୍ତ୍ତବ୍ୟପାଳନରେ ଅକ୍ଷମ, କାରଣ ଆମେ ଗୋଟିଏ ସମ୍ପୂର୍ଣ୍ଣ ମନୁଷ୍ୟ ନୋହୁଁ ।

ଏହି ପ୍ରସ୍ତାବ ସମର୍ଥନ କରି ମାନ୍ୟବର ବାବୁ ଗୋପବନ୍ଧୁ ଦାସ କହିଲେ :—

ସଭାପତି ମହୋଦୟ ଓ ଉପସ୍ଥିତ ସଭ୍ୟଗଣ ! ସମଗ୍ର ଓଡ଼ିଆଭାଷୀ ପ୍ରଦେଶ ଏକଶାସନାଧୀନ କରିବା ନିମନ୍ତେ ଏ ଯେଉଁ ନିର୍ବନ୍ଧ ଆଜି ଆଗତ ହୋଇଅଛି, ଏହା ଆଜି ନୂଆ ନୁହେ । ସମ୍ମିଳନୀର ଆରମ୍ଭରୁ ତେରବର୍ଷକାଳ ଏହି ଆନ୍ଦୋଳନ ବରାବର ହୋଇ ଆସୁଅଛି । ତେରବର୍ଷ କାହିଁକି, ତେର ଦୁଇଗୁଣେ ୨୬ ବର୍ଷ ପ୍ରାୟ ୩୦ ବର୍ଷ ହେଲା ଗଞ୍ଜାମ ଅଞ୍ଚଳରେ ଏହାର ଆନ୍ଦୋଳନ ହୋଇ ଆସୁଅଛି । ଗଞ୍ଜାମରେ, ପୁରୀରେ, ସମ୍ବଲପୁରରେ, ସିଂହଭୂମରେ ପ୍ରତ୍ୟେକ ଓଡ଼ିଆଭାଷୀ ଅଞ୍ଚଳରେ ଏହି ଆନ୍ଦୋଳନର ସୂତ୍ରପାତ ହୋଇଅଛି । ତେବେସୁଦ୍ଧା କୌଣସି ଫଳ ହୋଇନାହିଁ ।

କେହି କେହି କହନ୍ତି ଯେ ଆମର ଏ ଆନ୍ଦୋଳନରେ ତୀବ୍ରତା ନ ଥିବାରୁ କାର୍ଯ୍ୟ ସଫଳ ହୋଇପାରୁନାହିଁ । କିନ୍ତୁ ଯେପରି ଆନ୍ଦୋଳନ କରିବାକୁ ହୁଏ, ଆମ୍ଭେମାନେ ସେପରି ତ କରୁଛୁଁ, କଲେକ୍ଟରଠାରୁ ଆରମ୍ଭ କରି, କମିଶନର, ଲେଫ୍ଟେଲାଟ, ବଡ଼ଲାଟ ପର୍ଯ୍ୟନ୍ତ ଯଥାକ୍ରମେ ଦରଖାସ୍ତ, ଆବେଦନ କରିସାରିଛୁଁ । ଆଉ କି ତୀବ୍ରତା ଦରକାର କିଛି ତ ବୁଝିପାରୁନାହିଁ ।

ମହାଦେବଙ୍କ ଦର୍ଶନ କରିବାକୁ ହେଲେ ବୃଷଭର ପଛଆଡ଼ େ'ବୁଂ' କରିବାକୁ ହୁଏ (କରତାଳି) । ଆମ୍ଭେ କଲେକ୍ଟର, କମିଶନର, ଲେଫ୍ଟେଲାଟ ସମସ୍ତଙ୍କୁ ସେପରି ବେଳକାଳ ଜାଣି ଆବେଦନ କରିଥିଲେ ମଧ୍ୟ ମହାଦେବଙ୍କ ଦର୍ଶନ ଘଟିନାହିଁ । ସେମାନଙ୍କ ପାଖରେ ଜଗନ୍ନାଥଙ୍କ ଭକ୍ତ ଯେପରି " କରଯୋଡ଼ି ଜଣାଏ, ଗରୁଡ଼ ସ୍ତମ୍ଭ ସନ୍ନିଧାନ ହେ ମହାପ୍ରଭୁ । " କହେ, ଆମ୍ଭେମାନେ ସେହିପରି ସରକାରଙ୍କ ଗରୁଡ଼ ସ୍ତମ୍ଭ କଲେକ୍ଟର ପାଖରେ, କମିଶନର ପାଖରେ, ଲେଫ୍ଟେଲାଟ ନିକଟରେ ଜଣାଇ ଆସୁଥିଲୁଁ । କିନ୍ତୁ ମହାପ୍ରଭୁଙ୍କ କର୍ଣ୍ଣଗୋଚର ହୋଇ ନ ଥିଲା ।

Digitized by srujanika@gmail.com

ଏତେବେଳେ ସମ୍ରାଟଙ୍କ ଭାରତ ମନ୍ତ୍ରୀ, ତାଙ୍କୁ ସମ୍ରାଟ ମଧ୍ୟ କହିବା, ଭାରତକୁ ବିଜେ କଲେ । ଆମ୍ଭେମାନେ ଭାବିଲୁ "ଏ ଥର ଅନନ୍ୟୁଅ ନପାଇଲୁ ଗଙ୍ଗା ବିଜେ କଲେ ।" (କରତାଳି) । ସେତେବେଳେ କେତେଲୋକ କହିଲେ, ଭାରତରେ ସ୍ୱାୟତ୍ତଶାସନ ପାଇଁ ଯେଉଁ ଆନ୍ଦୋଳନ, ଓଡ଼ିଶାରେ ସେପରି ନୁହେଁ । ଓଡ଼ିଶାର ଆନ୍ଦୋଳନ କେତେଜଣ ଟିକାୟତ, ଚୁଟିକଟା, ଏ ମଧୁବାବୁ, ବ୍ରଜବାବୁ, ଆଉ କେତେ ଇଂରେଜି ପଢ଼ୁଆ କରୁଛନ୍ତି । ଅସ୍ତୁ, ସେ ନାଡ଼ ଚପିବା । (କରତାଳି) । ସରକାରଙ୍କୁ ଦେଖାଇବାକୁ ହେବ ଯେ ଓଡ଼ିଶାର ଅଶିକ୍ଷିତ ପଲ୍ଲି କୃଷକ ଓ ଇତର ସାଧାରଣ ନୀଚ ଜାତି ପର୍ଯ୍ୟନ୍ତ ଏହି ମିଳନର ଇଚ୍ଛା କରନ୍ତି । ସେଠାରୁ ନାନା-ସ୍ଥାନରେ ସାଧାରଣ ସଭା ହେଲା । ପୁରୀରେ ହେଲା, କଟକରେ ହେଲା, ଗଞ୍ଜାମରେ, ସମ୍ବଲପୁରରେ, ସିଂହଭୂମରେ ଓ ଅନ୍ୟାନ୍ୟ ଠାରେ ସଭା ହୋଇ ସରକାରଙ୍କୁ ଜଣାଇ ଦିଆଗଲା । କଟକ ସଭାରେ ପାଞ୍ଚହଜାର ସାଧାରଣ ଲୋକ ଏକ ସ୍ୱରରେ ଏହି ମିଳନ ଅଭିଳାଷ ପ୍ରକାଶ କରିଥିଲେ । (କରତାଳି) ପୁରୀ ସଭାରେ ୫୦୦୦, ସତ୍ୟବାଦୀରେ ୪୦୦୦, କଲିକତା ସଭାରେ ୭୦୦୦ ଓଡ଼ିଆ ଏକଜ ହୋଇ ଏହି ଆନ୍ଦୋଳନର ସପକ୍ଷରେ ମତ ଦେଇଥିଲେ (କରତାଳି) । କଲିକତା ସଭାରେ ମୁଁ ନିଜେ ଆଖିରେ ଦେଖିଅଛି—ସମସ୍ତେ ଏହି ମିଳନ ବାଞ୍ଛା ପୋଷଣ କରିଅଛନ୍ତି । ସଭା ହୋଇ ଟେଲିଗ୍ରାମ ହେଲା । ଏ ମାସ (ମାର୍ଚ୍ଚ ୧୯୧୮) ୧୮ ତାରିଖରେ ସତ୍ୟବାଦୀର ଗୋଟିଏ ପଲ୍ଲି ଗ୍ରାମରେ ଗୋଟିଏ ଜାତିଆଣ ସଭା ହୋଇଥିଲା, ସେଠାକୁ ମୁଁ ଯାଇଥିଲି । ସେଠାର ଲୋକେ ମୋତେ ପଚାରିଲେ, "ହଇହୋ, ତନମାସତଳେ ଏମାରମଠ ଅଗଦାଣ୍ଡରେ ଯେଉଁ ବଡ଼ ସଭା ହୋଇ ସରକାରଙ୍କୁ ଟେଲିଗ୍ରାଫ ଦିଆଯାଇଥିଲା, ସେ କଥା କ'ଣ ହେଲା ?" ମୁଁ କହିଲି "ସେ ଖବର ଯାଇଛି, ଆମ ମନ୍ତ୍ରୀଙ୍କର ଅନ୍ତର ପାଟି ଫିଟିନାହିଁ ।" (କରତାଳି) ଏଥିରୁ ସମସ୍ତେ ବୁଝିନେବେ ଯେ ଏ ମିଳନ ଆକାଂକ୍ଷା ପ୍ରତ୍ୟେକ ଓଡ଼ିଆର ଉପରେ ଅସ୍ଥିମଜ୍ଜାଗତ ହୋଇଅଛି, ଏହା ତ ଲୋକସାଧାରଣଙ୍କ ଅଭିମତ । ସଭାକରି ସେ ଅଭିମତ ତାର ଦ୍ୱାରା ଜଣାଇଲୁ । ଏଥିରେ ଯଦି ଅନ୍ତର ବିଶ୍ୱାସ ହେଉନାହିଁ, ଆଉ ତ ଉପାୟ ନାହିଁ ! (କରତାଳି) ମୁଁ ବସିରୁଛି, ଗୋଟିଏ ଯଦି ସେପରି ବଡ଼ ଗ୍ରାମଫୋନ ଥାନ୍ତା, ଏହି ସମସ୍ତ ଲୋକଙ୍କର, ସମସ୍ତ ଓଡ଼ିଆଜାତିର ସ୍ୱର ସେଥିରେ ଏକଜ କରି ମନ୍ତ୍ରୀଙ୍କର କର୍ଣ୍ଣରେ ପହଞ୍ଚାଇ ଦିଅନ୍ତେ (କରତାଳି) । ଆଉ ଅଧିକ କ'ଣ କରିପାରିବା ?

ଭାଇମାନେ, ଓଡ଼ିଶା ପ୍ରେମର ରାଜ୍ୟ, ଧର୍ମର ରାଜ୍ୟ, ଭକ୍ତିର ରାଜ୍ୟ । ଏଥିରେ ଆଉ ଅଧିକ ବା ଅନ୍ୟପ୍ରକାର କି ଆନ୍ଦୋଳନ କରିବା ବୁଝାଯାଉନାହିଁ । ଏହାଠାରୁ ଓଡ଼ିଆ ଆଉ ଅଧିକ କିଛି କରି ନ ପାରେ । ସବୁ ଆନ୍ଦୋଳନ ଶେଷ କରିଛୁ । ସବୁଠୁଁ ବଡ଼ ମାଲିକଙ୍କୁ କହିସାରିଛୁଁ । ଆନ୍ଦୋଳନ ଆଉ କେଉଁ ପର୍ଯ୍ୟନ୍ତ ଯାଇପାରେ ମୁଁ ବୁଝିପାରୁ ନାହିଁ । ସରକାର ଯଦି କହନ୍ତି ଯେ ଏପରି ଆନ୍ଦୋଳନ

Digitized by srujanika@gmail.com

କର, ତାହାହେଲେ ସେ ଲୋଡ଼ିବାପ୍ରକାରରେ ଅନ୍ଦୋଳନ କରନ୍ତେ । ତାଙ୍କ ସାହିତ ଫିଟିଲୁନାହିଁ । (କରତାଳ) ଏଣିକି ଏକମାତ୍ର ଅନ୍ଦୋଳନ 'ହରି ଭରସା' ।

ଭାଇମାନେ, ମୁଁ ପ୍ରାଣର ସହିତ କହୁଛି, ଏ ଆଶା ବ୍ୟର୍ଥ ହେବନାହିଁ । ମୋର ବିଶ୍ୱାସ ଅଛି, ଏ କୋଟି ଲୋକଙ୍କର ଦୀର୍ଘ ନିଶ୍ୱାସ, ଏ କୋଟି ଲୋକଙ୍କର ସମସ୍ତ ଅଶ୍ରୁ ବିନ୍ଦୁ ଜମାଟ ହୋଇ ରହୁଛି । ଦୁର୍ବଳର ଅନ୍ୟ ବଳନାହିଁ, କେବଳ ଦୀର୍ଘ ନିଶ୍ୱାସ, ଅଶ୍ରୁ ଭଗବାନଙ୍କ ଉପରେ ବିଶ୍ୱାସ ।

ହତାଶ ନ ହୋଇ ଉତ୍ତରପାଇଁ ସମସ୍ତେ ଗୃହିଁ ରହିବା, ଅସ୍ତି ବା ନାସ୍ତି କହିବଅନ୍ତୁ । ଭାରତରେ Reform ହେବ ବୋଲି ଚହଳ ପଡ଼ିଛି—ସମସ୍ତେ କେତେ ଆଶା ବାନ୍ଧିଛନ୍ତି । ଆମର reform ହେଉଛି କି deform ହେଉଛି ଦେଖିବା ( କରତାଳ ) । ଯଦି ଦେଶମିଶଣ ନ ହୁଏ, ତେବେ ଯାହା ହେବାରତ ହେବ, କେବଳ ମୋର ନିଜ ନିମନ୍ତେ ଯାହା କରିବାକୁ ମୁଁ ଭାବିଛି; ତାହା କହୁଛି ଯେ ଜୀବନ ଥିବାଯାଁଏ ସରକାରଙ୍କ ସହିତ ମୁଁ ଆଉ କୌଣସି ସମ୍ପର୍କ ରଖିବନାହିଁ ( କରତାଳ ) ।

ସରକାର ପ୍ରଚାର କରୁଅଛନ୍ତି ଯେ ସେ ଲୋକଙ୍କର ମତ ନେଇ କାର୍ଯ୍ୟ କରନ୍ତି । ଶାସନରେ ଅସୁବିଧା ଦୂର କରିବାପାଇଁ ତାଲୁକାବୋର୍ଡ, ଜିଲ୍ଲାବୋର୍ଡ ଇତ୍ୟାଦିର ସୃଷ୍ଟି ହୋଇ ସେ କହନ୍ତି ସେ ଯେଉଁ ଲୋକଙ୍କ ମତ ନେଇ କାର୍ଯ୍ୟ କରିବେ ବୋଲି ତାଙ୍କୁ ନିର୍ବାଚନ କରିଅଛନ୍ତି ତାଙ୍କଠାରେ ଯଦି ବିଶ୍ୱାସ ନ କଲେ, ତେବେ ଆଉ ତାଙ୍କର ସେ ଶୂନ୍ୟ ମର୍ଯ୍ୟାଦାରେ କି ପ୍ରୟୋଜନ ? (କରତାଳ)

ମୁଁ ଆଉ କିଛି କରିପାରିବନାହିଁ । କେବଳ ଏହି ଛିନ୍ନମସ୍ତା ମାତୃଭୂମିର ପଦରେ ପ୍ରାଣ ବିସର୍ଜନ କରିବି (କରତାଳ) । ମୋର ମାତୃଭୂମି, ଭଗବତୀ, ମା ଉତ୍କଳ ! ତୁମ୍ଭର ଛିନ୍ନବିଛିନ୍ନାଂଶ ଏକତ୍ରିତ ହେଲେ ସେ ପୂର୍ଣ୍ଣ ସୁନ୍ଦର ମୂର୍ତ୍ତି ଦେଖିବାର ଯେଉଁ ଆକାଂକ୍ଷା ଜୀବନରେ ପୋଷଣ କରିଥିଲି, ତାହା ପୂରଣ ଯଦି ନ ହୁଏ ତୁମ୍ଭର ସେ ଖଣ୍ଡ ବିଖଣ୍ଡିତ, ଛିନ୍ନମସ୍ତା ବିକଟରୂପ ପୂଜାକରି ଏପ୍ରାଣ ବିସର୍ଜନ କରିବି (କରତାଳ) ।

ଏପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

## ଅଷ୍ଟମ ନିର୍ଦ୍ଧାରଣ

ଏପ୍ରସ୍ତାବ ସଭାପତି ମହାଶୟ ଅଗତ କରିବାରୁ ତାହା ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

## ନବମ ନିର୍ଦ୍ଧାରଣ

ଏପ୍ରସ୍ତାବ ଅଗତ କରି ପଣ୍ଡିତ ଶ୍ରୀ ଜଦୁକୃଷ୍ଣମିଶ୍ର କାବ୍ୟତୀର୍ଥ କହିଲେ :—

ଏପ୍ରସ୍ତାବଟି ବଡ଼ ଗୁରୁତର । ଉତ୍କଳର ମୂକସାକ୍ଷୀ ପ୍ରଧାନ ତୀର୍ଥ ଜଗନ୍ନାଥ ମନ୍ଦିରର ମହିମା ବୁଝାଇବାକୁ ହେବ ନାହିଁ । ସାମ୍ୟବାଦନୀତି ପ୍ରଚାର କରିବା ନିମନ୍ତେ ଜଗତର ପୁରୁଷ ଓ ମହିଳାଙ୍କୁ ଭ୍ରାତୃ ଭଗ୍ନୀଭାବ ଶିଖାଇବାକୁ ଯେଉଁଠାରେ



Digitized by srujanika@gmail.com

ପ୍ରଭୁ ,ବଳଭଦ୍ର ଓ ଭଗ୍ନୀ ସୁଭଦ୍ରାଙ୍କ ସହିତ ବିରାଜିତ ତାହା ବି ଶିକ୍ଷାପ୍ରଦ । ପ୍ରାଚୀନ କୀର୍ତ୍ତି ରକ୍ଷାଲାଗି ଜଗତର ସର୍ବତ୍ର ଚେଷ୍ଟା ହେଉଅଛି ମାତ୍ର ଜଗନ୍ନାଥ ମନ୍ଦିର ଜୀର୍ଣ୍ଣ ସଂସ୍କାର କରି ଉତ୍କଳ ଗୌରବ ରକ୍ଷା କରିବା ଆବଶ୍ୟକ, ତେଣୁ ମୁଁ ଏ ପ୍ରସ୍ତାବ ଆଗତ କଲି ।

ମାନ୍ୟବର ରାଜାସାହେବ, କନିକା ଏପ୍ରସ୍ତାବକୁ ଅନୁମୋଦନ କରି କହିଲେ :—

ପଣ୍ଡିତ ମହାଶୟ ଯେ ପ୍ରସ୍ତାବ ଆଗତ କଲେ ତାହା ଆପଣମାନେ ଯେ ଗ୍ରହଣ କରିବେ ଏଥିରେ କୌଣସି ସନ୍ଦେହ ନାହିଁ । ଏ କାର୍ଯ୍ୟଟି ବଡ଼ ଗୁରୁତର । ଉତ୍କଳଖଣ୍ଡ ଭାରତର ପୁଣ୍ୟଭୂମି ଓ ଦେବ ଭୂମି । ଆଜକାଲି ସୁଦ୍ଧା ଏହାକୁ Holy Land କୁହାଯାଇ ଥାଏ । ଆମ୍ଭର ଅଧିକାଂଶ,ଶିଳ୍ପ ବାଣିଜ୍ୟ ଆଦି ଲୋପ ପାଇଅଛି । ମାତ୍ର ଶ୍ରୀକ୍ଷେତ୍ର ଆମ୍ଭମାନଙ୍କର ଏକମାତ୍ର ଗର୍ବର ବସ୍ତୁ । କେବଳ ଓଡ଼ିଆ ନୁହେଁ, ସମଗ୍ର ଭାରତବାସୀ ହିନ୍ଦୁ ଜଗନ୍ନାଥଙ୍କୁ ପୂଜା କରୁଅଛନ୍ତି । ଯେଉଁ ଓଡ଼ିଆର ପୂର୍ବ ପୁରୁଷ ଏ କୀର୍ତ୍ତି ନିର୍ମ୍ମାଣ କରିଅଛନ୍ତି, ତାହାଦ୍ୱାରା ଏ କୀର୍ତ୍ତି ରକ୍ଷାହେବ । କିନ୍ତୁ ଆମ୍ଭେମାନେ ଏଥିର ସମସ୍ତ ବ୍ୟୟ ନିର୍ବାହ କରିବାକୁ ଅକ୍ଷମ, ତେଣୁ ଭାରତର ଅନ୍ୟାନ୍ୟ ଅଞ୍ଚଳରେ ହିନ୍ଦୁମାନଙ୍କର ସାହାଯ୍ୟ ଲୋଡ଼ିବା ଉଚିତ ।

ମୁଁ ଯେତେବେଳେ ବିଲାତରେ ଥିଲି ସେତେବେଳେ ମୋର ଘର ଓଡ଼ିଶାରେ ବୋଲି କହିବାରୁ କେହି ବୁଝି ପାରିଲେ ନାହିଁ, ମାତ୍ର ଜଗନ୍ନାଥ ଦେଶରେ—ପୁରୀରେ—କହିବାରୁ ବୁଝିଲେ । ଏଥିରୁ ଆପଣମାନେ ଦେଖନ୍ତୁ ଜଗନ୍ନାଥଙ୍କୁ ପୃଥିବୀରେ ସମସ୍ତେ ଜାଣନ୍ତି ଏବଂ ଜଗନ୍ନାଥଙ୍କ ଲାଗି ଓଡ଼ିଶା ପୃଥିବୀରେ ପରିଚିତ । ଏପରି ତୀର୍ଥର ଜୀର୍ଣ୍ଣ ସଂସ୍କାର ନ ହେଲେ ଆମପକ୍ଷରେ ବଡ଼ ଲଜ୍ଜାର କଥା ହେବ । ମୋର ମତ ଶ୍ରୀଚୌଧୁରୀ ଗୋପାଳକୃଷ୍ଣଦାସଙ୍କୁ ମଧ୍ୟ ଏ ସଂସ୍କାର ସମିତିର ସଭ୍ୟରୂପେ ଗ୍ରହଣ କରାଯାଉ ।

ଏମାରମଠର ମହନ୍ତ ମହାରାଜ ଏପ୍ରସ୍ତାବକୁ ସମର୍ଥନ କରି କହିଲେ .—

ପ୍ରସ୍ତାବଟି ମହତ୍ତ୍ୱ । ଜୀର୍ଣ୍ଣସଂସ୍କାର ନିତାନ୍ତ ଆବଶ୍ୟକ । ବାହାରର ହିନ୍ଦୁଙ୍କଠାରୁ ଅର୍ଥ ସଂଗ୍ରହ କରିବାକୁ ହେବ, ଆମ୍ଭମାନଙ୍କୁ ମଧ୍ୟ ସାହାଯ୍ୟ କରିବାକୁ ହେବ । ମୋର ମଠ ତରଫରୁ ସାହାଯ୍ୟ ସ୍ୱରୂପ ମୁଁ ପାଞ୍ଚ ହଜାର ଟଙ୍କା ଦେବାକୁ ପ୍ରତିଶ୍ରୁତ ହେଉଅଛି । ଶୁଭସ୍ୟ ଶୀଘ୍ରଂ—ସଂସ୍କାର କାର୍ଯ୍ୟ ଶୀଘ୍ର ଆରମ୍ଭ ହେବା ଉଚିତ । ଏ କାର୍ଯ୍ୟ ନିର୍ବାହକ ସମିତିର ସଭ୍ୟମାନଙ୍କ ମଧ୍ୟରୁ କିଏ ଅଛି ଅନୁଗୁଳରେ, କିଏ ଅଛି କଲିକତାରେ କିନ୍ତୁ ଏମାନେ ସମସ୍ତେ ଅଚଳନ୍ତୀ ବିଷ୍ଣୁ ନ ହୋଇ ଚଳନ୍ତୀ ବିଷ୍ଣୁ ହେଲେ କାର୍ଯ୍ୟ ଅବଶ୍ୟ ହେବ ।

ଶ୍ରୀଯୁକ୍ତ ବାବୁ ନୀଳକଣ୍ଠଦାସ ଏମ୍ ଏ. ଏପ୍ରସ୍ତାବକୁ ସମର୍ଥନ କରି କହିଲେ;

ଓଡ଼ିଶାର ସ୍ୱାତନ୍ତ୍ର୍ୟ ଶିଳ୍ପ ଓ ଧର୍ମ୍ମ । ଏପ୍ରସ୍ତାବଟି ଜଣେ ପଣ୍ଡିତ ଆଗତ କରିଅଛନ୍ତି, ଜଣେ ରାଜା ଅନୁମୋଦନ କରିଅଛନ୍ତି । ପୁଣି ଜଣେ ଧର୍ମାଧ୍ୟକ୍ଷ ସମର୍ଥନ

Digitized by srujanika@gmail.com

କରିଅଛନ୍ତି, ତେଣୁ ପୁନଃ ସମର୍ଥନ ନିଷ୍ପ୍ରୟୋଜନ । ମହାନ୍ତି ମହାଶୟ ଯଥାର୍ଥ ସହାନୁଭୂତି ଦେଖାଇଅଛନ୍ତି, ତେଣୁ ମୁଁ ଏହା ଅନ୍ତରରେ ସମର୍ଥନ କଲି ।

( ଏପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା )

ଦଶମ ନିର୍ଦ୍ଧାରଣ

ମାନ୍ୟବର ଶ୍ରୀଯୁକ୍ତ ବାବୁ ବ୍ରଜସୁନ୍ଦର ଦାସ ଏପ୍ରସ୍ତାବ ଉପାଗତ କରି କହିଲେ :—

ବର୍ତ୍ତମାନ ସମଗ୍ର ଓଡ଼ିଶା ରେ ବିଦ୍ୟାଚର୍ଚ୍ଚା ଅଜ୍ଞାତ। ପ୍ରବଳ। ପ୍ରତ୍ୟେକସ୍ଥାନରେ ଲୋକମାନେ ପିଲାଙ୍କୁ ଉଚ୍ଚ ଇଂରାଜୀ ଶିକ୍ଷା ଦେବାରେ ସଯତ୍ନ । ମାତ୍ର ସହାନୁଭୂତି ବିଶେଷତଃ କର୍ତ୍ତୃପକ୍ଷଙ୍କ ସହାନୁଭୂତି ଅଭାବରୁ ଗଛା ମରୁଡ଼ି ହେଉଅଛି । ଯଥା, କଲ୍ୟାଣପୁର, ସାଲେପୁର, ନିଆଳି, ଭୁବନେଶ୍ୱର ମଧ୍ୟ ସ୍କୁଲ୍ସ୍କୁଲ୍ ହେଉଅଛି । ମାତ୍ର ଏ ଅବସ୍ଥାରେ ଆମ୍ଭମାନଙ୍କର ଉତ୍ସାହୀ ମୁସଲମାନଭ୍ରାତାଗଣ ବର୍ଷେ ପର୍ଯ୍ୟନ୍ତ ବିନା ବେତନରେ ଅନେକ ତ୍ୟାଗ ସ୍ୱୀକାର କରି ଏସ୍କୁଲକୁ ସ୍ଥାୟୀ କରିଅଛନ୍ତି । ଏଠାରେ ପ୍ରାୟ ପାଞ୍ଚଶତ ଛାତ୍ର ପଢ଼ୁଅଛନ୍ତି । କେବଳ ଟ ୨୫୦୦୯ ଆୟ, କିନ୍ତୁ ଛାତ୍ର ଓ ଶିକ୍ଷକଙ୍କ ଉଦ୍ୟମରେ ନଅ ଏକର ଭୂମି କିଣିଲେଣି—ଏ ସ୍କୁଲ୍ଲାଗି ସେ ଉତ୍ସାହୀ ଭ୍ରାତାମାନଙ୍କୁ କେବଳ ଯେ ଧନ୍ୟବାଦ ଦେବା ତାହା ନୁହେଁ, ଅନ୍ୟତ୍ର ଯେଉଁ ସ୍ଥାନମାନଙ୍କରେ ସ୍କୁଲ ହେଉଅଛି ସେଠାରେ ଏମାନଙ୍କୁ ଅନୁକରଣ କରିବା ଉଚିତ ।

ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାନ୍ତି ଏ ପ୍ରସ୍ତାବକୁ ଅନୁମୋଦନ କରି କହିଲେ ;—

କଟକ ମୁସଲମାନମାନଙ୍କର ସେମିନାରି ଗୃହ ପାଞ୍ଚବର୍ଷ ହେଲା ସ୍ଥାପିତ, ଏଥିର ଉଦ୍ୟୋଗକର୍ତ୍ତା ଆମର ମୁସଲମାନ ଭାଇମାନେ । ସେଠାରେ ଯେ କେବଳ ମୁସଲମାନ ପଢ଼ନ୍ତି ତାହା ନୁହେଁ, ଅନେକ ହିନ୍ଦୁ ମଧ୍ୟ ପଢ଼ନ୍ତି । ଯେତେବେଳେ କଟକରେ ଛାତ୍ର ସଂଖ୍ୟା ବୃଦ୍ଧି ହେବାରୁ ଆଉ ଗୋଟିଏ ସ୍କୁଲର ଅଭାବ ଅନୁଭୂତ ହେଉଥିଲା, ଠିକ୍ ସେହିସମୟରେ ଆମର ମୁସଲମାନ ଭାଇମାନେ ଏଣ୍ଟ୍ରାନ୍ସ ସ୍କୁଲଟିଏ ସ୍ଥାପନକଲେ । ଏଠାରେ ଅନେକ ଦରିଦ୍ର ଛାତ୍ର ବିନାବେତନରେ ପଢ଼ନ୍ତି । ସେମାନେ ଅର୍ଥାତ୍ ଉଦ୍ୟୋକ୍ତାମାନେ ଯେ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର ଏ କଥା ସମସ୍ତେ ସ୍ୱୀକାର କରିବେ । ବର୍ତ୍ତମାନ ଅନ୍ୟାନ୍ୟ ସମସ୍ତସ୍କୁଲ ମଧ୍ୟରୁ ମିସନ୍ସ୍କୁଲ ଛଡ଼ା ଅନ୍ୟତ୍ର ଧର୍ମଶିକ୍ଷାଦିଆ ହୁଏ ନାହିଁ ମାତ୍ର ମିସନ୍ସ୍କୁଲରେ କେବଳ ବାଇବେଲ ମାତ୍ର ପଢ଼ାହୁଏ । ସେମିନାରିରେ ସର୍ବପ୍ରକାର ଧର୍ମପୁସ୍ତକ ଶିକ୍ଷା ଦିଆଯାଏ—ଏହା ଏ ସ୍କୁଲର ବିଶେଷତ୍ୱ, ଏଠାରେ ହିନ୍ଦୁମୁସଲମାନ ପାର୍ଥକ୍ୟ ନାହିଁ ।

ଶ୍ରୀଯୁକ୍ତ ରାଧାକୃଷ୍ଣବସୁ ଏମ୍, ଏ. ମହାଶୟ ଏ ପ୍ରସ୍ତାବକୁ ସମର୍ଥନ କରି କହିଲେ ;—

ଓଡ଼ିଶାର ମୁସଲମାନମାନଙ୍କ ମଧ୍ୟରେ ଆଶାନୁରୂପ ଶିକ୍ଷା ବିସ୍ତାର ହୋଇ ନାହିଁ । ଅତ୍ୟନ୍ତ ସୁଖର ବିଷୟ ଯେ ଉକ୍ତ ସମାଜରେ ଅନେକ ଗୁଡ଼ିଏ ଉଚ୍ଚଶିକ୍ଷିତ ସଚ୍ଚରିତ୍ର ଓ ଉଦାରମନା ଗ୍ରାଜୁଏଟଙ୍କର ଅଭ୍ୟୁଦୟ ହୋଇଅଛି । ସେହି କେତେ

Digitized by srujanika@gmail.com

ଜଣ ସ୍ୱାର୍ଥତ୍ୟାଗୀ ମୁସଲମାନ ଯୁବକ ଭାଇମାନଙ୍କର ବମ୍ଭଲ ସ୍ୱାର୍ଥତ୍ୟାଗଦ୍ୱାରା ମୋହମ୍ମଦଶମୀନାର ନାମକ ଯେଉଁ ବିଦ୍ୟାଳୟ ପ୍ରସ୍ତୁତ ହୋଇଅଛି, ତାହା ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ବୃଦ୍ଧିର ନିଦର୍ଶନ ଅଟେ । ଆଜି ଯେଉଁ ମୁସଲମାନ ଗ୍ରାଜୁଏଟ ଭାଇମାନେ ଏହି ବିଦ୍ୟାଳୟ ପରିଚାଳନ କରି ହିନ୍ଦୁ ମୁସଲମାନ ଉଭୟ ସମାଜର [illegible]ଭାଜନ ହୋଇଅଛନ୍ତି, ସେହିମାନେ କାଲି ନିଜ ସମାଜର ନେତାଙ୍କର ସ୍ଥାନ ଅଧିକାର କରିବେ । ଯେଉଁ ଉଦାରଭାବଦ୍ୱାରା ପରିଚାଳିତ ହୋଇ ସେମାନେ ଆଜି ଏହି ଶିକ୍ଷା ବିସ୍ତାର କାର୍ଯ୍ୟରେ ବ୍ରତୀ ହୋଇ ଅଛନ୍ତି, ସେହି ଉଦାର ଭାବ ସେମାନଙ୍କ ଚେଷ୍ଟାରେ ସେମାନଙ୍କ ସମାଜର ଅଶିକ୍ଷିତ ଶ୍ରେଣୀ ମଧ୍ୟରେ ବିସ୍ତୃତ ଲାଭ କରିବ । ଏହି ଉଦାର ଓ ଅସାମ୍ପ୍ରଦାୟିକ ଭାବର ବିସ୍ତୃତି ସଙ୍ଗେ ସଙ୍ଗେ ସାମ୍ପ୍ରଦାୟିକତାପ୍ରଣୋଦିତ ଅସହିଷ୍ଣୁତାର ଘଟଣାମାନ କ୍ରମେ କ୍ରମେ ଉଠିଯିବ । ଉକ୍ତ ଘଟଣାମାନ ବ୍ୟଷ୍ଟି ସମଷ୍ଟିଭାବରେ ପୁନଶ୍ଚ ହିନ୍ଦୁମାନଙ୍କ ମନରେ ଅତ୍ୟନ୍ତ କ୍ଷୋଭ ଜନ୍ମାଇଥାଏ, ଅତଏବ ମୁସଲମାନ ଭାଇମାନଙ୍କ ନିକଟରେ ମୁଁ ସାନୁନୟ ନିବେଦନ କରୁଅଛି ଯେ ସେମାନେ ଚେଷ୍ଟାକରି ସେମାନଙ୍କ ସମାଜର ନିରକ୍ଷର ଲୋକମାନଙ୍କ ମନ ମଧ୍ୟରେ ଉଦାର ଭାବ ଜାଗ୍ରତ କରାଇବେ । ତାହା ହେଲେ ହିନ୍ଦୁ ଓ ମୁସଲମାନ ଜନସାଧାରଣଙ୍କ ମଧ୍ୟରେ ପରସ୍ପର ଅକୃତ୍ରିମ ଓ ସୌହାର୍ଦ୍ଦ୍ୟ ଅକ୍ଷୁଣ୍ଣଭାବରେ ସ୍ଥାପିତ ହେବ । ଏହି ଆଶା ହୃଦୟରେ ପୋଷଣ କରି ଓ ଆମ୍ଭର ମୁସଲମାନ ଗ୍ରାଜୁଏଟ ଭାଇମାନଙ୍କୁ ଏହି ବିଷୟ ଲକ୍ଷ୍ୟ ରଖି କାର୍ଯ୍ୟ କରିବାକୁ ପରାମର୍ଶ ଦେଇ ମୁଁ ଏ ପ୍ରସ୍ତାବକୁ ଅନ୍ତରର ସହିତ ସମର୍ଥନ କରୁଅଛି ।

ଶ୍ରୀଯୁକ୍ତ ବାବୁ ବ୍ରହ୍ମାନନ୍ଦ ମହାନ୍ତି ସମର୍ଥନ କରି କହିଲେ :—

ସମ୍ମିଳନୀ ନିଜେ ଏପରି ତ୍ୟାଗର କୌଣସି ଉଦାହରଣ ଦେଖାଇ ପାରି ନାହିଁ, କିନ୍ତୁ ମୁସଲମାନ ଭ୍ରାତାଙ୍କ ତ୍ୟାଗ ଲାଗି ଗୋଟିଏ ଧନ୍ୟବାଦ ଦେବା ସଙ୍ଗତ ମନେ କରିଅଛନ୍ତି । ତେଣୁ ମୁଁ ଏହା ସମର୍ଥନ କଲି

ଏ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା ।

ଏକାଦଶ ନିର୍ଦ୍ଧାରଣ

ପଣ୍ଡିତ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଏ ପ୍ରସ୍ତାବକୁ ଆଗତ କରି କହିଲେ :—

ସିଂହଭୂମର କଥା ଯେ ଆଗେ ନିଭେଇଛି, ସେହି ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ବର୍ତ୍ତମାନ ସେଠାର ଓଡ଼ିଆଙ୍କ ଅସୁବିଧା କଥା କହିବେ । ଚକ୍ରଧରପୁର ବିଶାଖାପତ୍ତନରେ ସେଠା ଅଧିବାସିମାନେ ମାତୃଭାଷାରୁ ବଞ୍ଚିତ ହୋଇ ଯେଉଁ କଷ୍ଟ ଅନୁଭବ କରନ୍ତି, ତାହା ସେମାନେ କେବଳ ଜାଣନ୍ତି । ସମ୍ବଲପୁର ସମ୍ମିଳନରେ ଯେତେବେଳେ ସିଂହଭୂମରେ ଶିକ୍ଷା ବିସ୍ତାର ପ୍ରସ୍ତାବ ହୋଇଥିଲା, ସେ ତେବେଳେ ସେଠାକୁ ଯାଇ ଲୋକଙ୍କର ଅବସ୍ଥା ସ୍ୱଚକ୍ଷୁରେ ଦେଖିବାପାଇଁ ମୁଁ ପ୍ରତିଶ୍ରୁତ ହୋଇଥିଲି । କିନ୍ତୁ ସମୟାଭାବରୁ କେବଳ ଏକମାସ ସେଠାରେ କଟାଇଥିଲି । ସେହି ଏକମାସ ମଧ୍ୟରେ ଅନେକ ଗ୍ରାମ, ସ୍କୁଲମାନ ଦେଖିଛି । ସେଠା ବାଳକମାନଙ୍କ

Digitized by srujanika@gmail.com

ସହିତ କଥା ମଧ୍ୟ ହୋଇଅଛି । ଏ ପ୍ରଦେଶର ବଡ଼ ହାକିମଙ୍କ ସହିତ ମଧ୍ୟ ସେ ସମ୍ବନ୍ଧେ ମୌଖିକ କଥାବାର୍ତ୍ତା ହୋଇଛି । କିନ୍ତୁ ସେଠା କଚେରିଭାଷା ଓଡ଼ିଆ ହେବା ସମ୍ବନ୍ଧରେ କିଛି ଫଳ ହୋଇନାହିଁ ।

ସେଠାରେ କୃଷ୍ଣଚନ୍ଦ୍ର ଅଗ୍ରଣୀଙ୍କ ପୁଅ ପ୍ରଥମ ବର୍ଣ୍ଣପଞ୍ଜିକଚନ୍ଦ୍ର ଯେପରି ପଢ଼ନ୍ତି, ତାହା ଦେଖି କେତେ ଅଗ୍ରଣୀ ଆଶ୍ଚର୍ଯ୍ୟ ହୋଇଗଲେଣି (କରତାଳି) । ଗୋଟିଏ ନମୁନା ଦେଖନ୍ତୁ—ପିଲାମାନେ ପଢ଼ୁଛନ୍ତି "ଦେଖ ଲତ୍‌କ ବନର ଅଯ୍ୟା" , ଏହାର ଅର୍ଥ ଓଡ଼ିଆରେ ବୁଝାଯାଏ । ବର୍ଣ୍ଣବୋଧ ପଢିବା ପିଲାଙ୍କର ଏହି ଅବସ୍ଥା ।

ମାନ୍ୟବର ସେହି ସାହେବଙ୍କୁ ମୁଁ ଏହି କଥା କହିଲି, "ସାହେବ, ମୁଁ national standpointରୁ ଏହାର ପରିବର୍ତ୍ତନ ପାଇଁ କହୁନାହିଁ । କିନ୍ତୁ rational standpoint ରୁ ଏହା press କରୁଛି । କିତାନ୍ତ ଛୋଟ ବାଳକମାନଙ୍କୁ ମାତୃଭାଷା ଛଡ଼ାଇ ଏପରି ଭାଷାରେ ପାଠ ପଢ଼ାନ୍ତି, ଯାହା ପୁଣି ମାତୃଭାଷାରେ ବୁଝାଇବାକୁ ହୁଏ । ଏପରି ଅସଙ୍ଗତ ଅଉ କ'ଣ ହୋଇପାରେ ?

୧୮୬୯ ସାଲରେ ଯେତେବେଳେ ଇଂରେଜ ଓ 'ହୋ'ମାନଙ୍କର ସନ୍ଧି ହୁଏ, ସେତେବେଳେଠୁଁ ସିଂହଭୂମରେ ହିନ୍ଦି ଶିକ୍ଷା ଦିଆଯିବାର ସ୍ଥିର ହେଲା । ତାହା ଅଜକୁ ପ୍ରାୟ ଏକଶ ବର୍ଷର କଥା । ଏହି ଏକଶ ବର୍ଷ ହିନ୍ଦି ପଢ଼ାଗଲା ପରେ ସେଠାରେ ତ ଓଡ଼ିଆ ପ୍ରାଣ ଲୋପ ପାଇ ନାହିଁ । ଓଡ଼ିଆ ଭାଷାକୁ କେତେ ବନର ମନ୍ଦର କଲେଣି, ତଥାପି ସେ ମନ୍ଦର ପର ଛିଡ଼ା ହୋଇଛି । (କରତାଳି) ତାହା କ ଲୋପ ପାଇ ପାରେ ?

ମୁଁ ସିଂହଭୂମ ପରିଦର୍ଶନ କଲାବେଳେ କେତେକ statistics ସଂଗ୍ରହ କରିଥିଲି । ସେଥିରୁ କେତୋଟି ଏଠାରେ ପ୍ରକାଶ କରୁଛି—

ଡର୍କ ସ୍କୁଲରେ ସମସ୍ତ ୬୦ ଜଣ ଛାତ୍ର ଓଡ଼ିଆ ।
କେସବେଶ ବିଦ୍ୟାଳୟରେ ୬୬ ରୁ ୧୯ ଓଡ଼ିଆ ।
ସଜ ଗ୍ରାମ ସ୍କୁଲରେ ୫୦ ରୁ ୩୧ ଓଡ଼ିଆ ।
ସୋନୁଅ ଅ: ପ୍ରା: ସ୍କୁଲ ୪୭ ରୁ ୪୦ ଓଡ଼ିଆ ।
ଘୋଡ଼ାବାନ୍ଧ ନ: ପ୍ରା: ସ୍କୁଲ ୬୬ ରୁ ୧୫ ଓଡ଼ିଆ ।
ବାଲୁଜ ସ୍କୁଲ—୬୭ ରୁ ୬୯ ଓଡ଼ିଆ ।

ଓଡ଼ିଆ ଛଡ଼ା ଯେଉଁ ମୁଷ୍ଟିମେୟ ଛାତ୍ର ପଢ଼ନ୍ତି ସମସ୍ତେ ହୋ' ଜାତିର । ସେମାନଙ୍କ ପକ୍ଷେ ଓଡ଼ିଆ ଯାହା ହିନ୍ଦି ତାହା—ବରଂ ଓଡ଼ିଆ ସେମାନେ ବେଶୀ ଅଦରରେ ପଢ଼ନ୍ତି ।

ଗିଲହରି ବୋଇଲେ ଗୁଣ୍ଡୁଚିମୂଷା ବୋଲି ପିଲାମାନେ ପଢ଼ନ୍ତି । ମୁଁ ଗୋଟିଏ ପିଲାକୁ ଗୋଟିଏ ଗୁଣ୍ଡୁଚ ମୂଷା ଦେଖାଇ ପଚାରିଲି "ଏଇଟା କଣ ? ସେ କହିଲା "ଗୁଣ୍ଡୁଚ ମୂଷା" । ଏଥିରୁ ଜଣାଯାଉଛି ଯେ ଏକଶତ ବର୍ଷ କାଳ ସରକାର ସିଂହଭୂମରେ "ଗିଲ ହରି" ଭରତ କରି "ଗୁଣ୍ଡୁଚମୂଷା" ଉଠାଇ ପାରିନାହାନ୍ତି । (କରତାଳି) ।

Digitized by srujanika@gmail.com

ଏ ଜାତକୁ ରାଜନୈତିକ ଅସ୍ତ୍ର ଖଣ୍ଡ ଖଣ୍ଡ କରିଅଛି । କିନ୍ତୁ ଜାତକୁ ରାଜନୈତିକ ଅସ୍ତ୍ର କାଟି ଛାଡ଼ୁ, ପାଣି ବୁଡ଼େଇପାରିବ ନାହିଁ, ପବନ ଉଡ଼େଇ ପାରିବ ନାହିଁ, ନିଆଁ ପୋଡ଼ି ପାରିବ ନାହିଁ (କରତାଳି) । ଆମର ଶକ୍ତି ଅହୁରି ଲୋପ ପାଇ ନାହିଁ, ତାହା ଅଛି । କେତେ କାଳରେ, ବିରାଟ ତେଜରେ; ସେହି ଶକ୍ତି ନିଶ୍ଚୟ ବାହାରିବ (କରତାଳି) । ସେ ଦିନ ସମାଗତ ହେଲାଣି । (କରତାଳି) ।

'ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ । ନଚୈନଂ କ୍ଲେଦୟନ୍ତ୍ୟାପୋ, ନ ଶୋଷୟତି ମାରୁତଃ' । ମୋର ବିଶ୍ୱାସ ଆତ୍ମା ମରେ ନାହିଁ । ବ୍ୟକ୍ତିଗତ ଆତ୍ମା ଯଦି ଅମର ଗୋଟିଏ ଜାତିର ଆତ୍ମା କିପରି ମରିପାରେ ? (କରତାଳି) ଶତଶକ୍ତିର ଗୃପସନ୍ଧେ ସେ ଆତ୍ମା ଦିନେ ଫୁଟି ଉଠିବ । (କରତାଳି) ।

ସିଂହଭୂମରେ ଓଡ଼ିଆ ଭାଷାର ରକ୍ଷା ହେବ, ନିରାଶ ହେବାର କାରଣ ନାହିଁ । ନିଜବଳରେ ସେ ଦିନେ ରକ୍ଷା ପାଇବ । କିନ୍ତୁ ଏ କ୍ଷେତ୍ରରେ ଆମ୍ଭମାନଙ୍କର କର୍ତ୍ତବ୍ୟ କ'ଣ ? ସରକାର ପ୍ରତ୍ୟେକ ବିଷୟରେ facts ଓ figures ଲୋଡ଼ନ୍ତି । ଆମ୍ଭମାନଙ୍କୁ ସେଠାରେ ଘର, ଘର, ଗ୍ରାମ ଗ୍ରାମ, ସ୍କୁଲ ସ୍କୁଲ, ବୁଲି census ସଂଗ୍ରହ କରିବାକୁ ହେବ । ତାହାପରେ ସରକାରଙ୍କୁ କହିବା, "ଦେଖ; ଯାହା ଲୋଡ଼ିଥିଲ ହେଉଛି ଆମର facts ଓ figures, ଏଥିରେ ଯଦି ତୁମେ ସନ୍ତୁଷ୍ଟ ନ ହେବ, ତେବେ ତୁମକୁ ସନ୍ତୁଷ୍ଟ କରିବାର ଅଉ ଆମର ଜିନିସ ନାହିଁ ( କରତାଳି )

ଶ୍ରୀଯୁକ୍ତ ବାବୁ ଗୋଲକଚନ୍ଦ୍ର ଦାସ ସମର୍ଥନ କରି କହିଲେ—

ଜାତି ବା ଦେଶର ଏକତ୍ରୀକରଣ ଲାଗି ଧର୍ମ ଓ ଭାଷା ଦରକାର । ଭାରତର ଭାଷା ବା ଧର୍ମ ଏକ ଥିଲେ, ଭାରତର ଏ ଦଶା ହୋଇନ୍ତା ନାହିଁ । ଛବିରେ ଦେଖ— daughter in exile ମା'କୁ ହାତଠାରି କହୁଚି ମା', ମୁଁ ତୋ କୋଡ଼କୁ ଯିବି, ମାତ୍ର ମା' ତାର ଭାଷା ବୁଝୁନାହିଁ ବା ଝିଅ ମାର ଭାଷା ବୁଝୁନାହିଁ । ଆଚାର୍ଯ୍ୟ ମହାଶୟ ଉତ୍କଳ ସଭା ସ୍ଥାପନ କରି ଯାହା କରିଅଛନ୍ତି ଆପଣମାନେ ଦେଖିଥିବେ । ଆମ୍ଭମାନଙ୍କର ଶକ୍ତି ଲୋପ ହେବାର ନୁହେଁ । ଆମ୍ଭମାନଙ୍କର ପାଣ୍ଠି ଅଛି, ଆମ୍ଭେମାନେ ପାଣ୍ଠି କରିବୁଁ, କଚେରୀ ଭାଷା ବାଧିତା ମୂଳକ—ତେଣୁ କଚେରୀ ଭାଷା ଓଡ଼ିଆ ହେଲେ ବେଶ୍ ହେବ । ଆମେ ବେଶୀ ମାଗୁ ନାହୁଁ, କେବଳ କାଗଜ କଲମରେ ଗାରେ ମାରିଦିଅ, ଅମୁକ ଅମୁକ ସ୍ଥାନରେ କଚେରୀ ଭାଷା ଓଡ଼ିଆ ହେଲା । ଏଥିରେ ବେଶୀ କଷ୍ଟ କଣ ?

ତତ୍ପରେ ଅନ୍ୟ ଦୁଇଜଣଙ୍କଦ୍ୱାରା ସମର୍ଥି

ଗୃହୀତ ହେଲା ।

ଦୁଃଖର ବିଷୟ ଅନ୍ୟାନ୍ୟ ପ୍ରସ୍ତାବମା

ହୋଇପାରି ନାହିଁ, କିନ୍ତୁ ସେ ସମସ୍ତ ପ

ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିଲା ।

Digitized by srujanika@gmail.com

## ପରିଶିଷ୍ଟ ।

ଓଡ଼ିଶାର ଶ୍ରୀଯୁକ୍ତ କମିଶନର ସାହେବ ସମ୍ମିଳନୀରେ ଯୋଗ ଦେଇ ନ ପାରିବା ସମ୍ବନ୍ଧେ ଲେଖିଅଛନ୍ତି ।

" I regret I find it impossible to come to the Conferercе The Mayurbhanj appeals, in which I have to consider the case of each of the very number of accused have occupied a large amount of my time, and I must try to get through the arrears which have accumulated, before I attend the next council meeting."

---

କଟକର ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ କର୍ଷ୍ଟିଡ଼ ସାହେବ ଲେଖିଅଛନ୍ତି—

I regret that as I shall be away at Puri on the 30th and 31st instants, I shall not be able to attend your conference. It would have given me pleasure to be present at your deleberations had it been possible.

---

କଟକ ରେଭେନ୍ସା କଲେଜର ପ୍ରିନ୍ସିପାଲ ଶ୍ରୀଯୁକ୍ତ ଲାମ୍ବାର୍ଟସାହେବ ଲେଖିଅଛନ୍ତି—

Thank you for your invitation to the Conference. If I can, I will come some time on Saturday but I can not say definitely when.

---

କଟକର ଡିଃ ଜଜ୍ ଶ୍ରୀଯୁକ୍ତ ଉଇଲିୟମସ୍ ସାହେବ—

I regret I cannot accept your invitation to the Utkal Union conference. The Maharaja of Mayurbhanj has invited me to the shoot on the 30th, 31st and 1st April. And so I shall be away from Cuttack on those dates. Had I been remaining in Cuttack, I should have been happy to attend the Conference.

---

Digitized by srujanika@gmail.com

ଜମିଦାର ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ଘୋଷ—

"Mr. J. N. Bose thanks the secretaries to the Reception committee of the Utkal Union Conference for their kind invitation to the Conference but regrets his inability to attend its sittings as his time is entirely taken up with the All Orissa Bengalee Settlers' Conference which sits on even dates with the Utkal Conference."

---

ପୁରୁଲିଆରୁ ଶ୍ରୀଯୁକ୍ତ ପୂର୍ଣ୍ଣେନ୍ଦୁ ନାରାୟଣ ସିଂହ ତାରଦ୍ୱାରା ଲେଖିଅଛନ୍ତି—

"Every good wishes for success."

---

ଖାଡ଼ଗାପେଠାରୁ ତାରଯୋଗେ ସମ୍ବାଦ—

"Regretting inability attending conference, hoping successful."

---

ପୁରୀରୁ 'ରତ୍ନାକର'ର Editor ତାରସମ୍ବାଦ ଦେଇଅଛନ୍ତି—

"Extremely sorry unable to attend Conference, wish all success."

---

କଳଙ୍ଗାପଟ୍ଟମରୁ ମେଃ ଭିଃ ଜନାର୍ଦ୍ଦନ ସ୍ୱାମି ତାରଦ୍ୱାରା ସମ୍ବାଦ ଦେଇଅଛନ୍ତି—

"Deeply regret inability to attend Conference owing illness of my mother I pray to almighty for succes of the Conference I am in full sympathy with the objects of Conference in the interest of Oriya brothers of Ganjam District."

---

'ନୀହାର'ର ସମ୍ପାଦକ ଶ୍ରୀଯୁକ୍ତ ଏମ୍, ଏସ୍ [illegible]ଯନା, କଣ୍ଟାଇ—

"Many thanks for your invitation but I am sorry to say that on account of my ill-helth I shall not be able to attend your Conference. I hope that the Utkal Conference will be attended by a large number of men and I wish it every success."

---

Digitized by srujanika@gmail.com

ମିଃ ବିଃ ଦାସ ବମ୍ବେରୁ ତାରଯୋଗେ ଜଣାଇଅଛନ୍ତି—
"Every Oriya heart is with you this day."

---

ଶ୍ରୀମାନ୍ ମହାରାଜା ବାହାଦୁର, ଅଠଗଡ଼ ସମ୍ମିଳନୀରେ ଯୋଗ ଦେଇ ନ ପାରି ଯେଉଁ ସହାନୁଭୂତିସୂଚକ ପତ୍ର ଲେଖିଥିଲେ, ତାହାର ଅବିକଳ ନକଲ ନିମ୍ନରେ ଦିଆଗଲା । ଅଭ୍ୟର୍ଥନାସମିତିର ସମ୍ପାଦକ ମାନ୍ୟବର ମିଃ ମଧୁସୂଦନ ଦାସ ସିଃ ଆଇଃ ଇଃ ଅଧିବେଶନର ୨ୟ ଦିବସରେ ତାଙ୍କର ଉପକ୍ରମଣିକା ବକ୍ତୃତା ମଧ୍ୟରେ ଏହି ପତ୍ର ସଭାସ୍ଥ ସମସ୍ତଙ୍କୁ ଶୁଣାଇ ଦେଇଥିଲେ । ଏ ପରେ ମହାରାଜା ମହୋଦୟ ଅଉ ଖଣ୍ଡିଏ ପତ୍ରରେ ତାଙ୍କର ପ୍ରତିନିଧିସ୍ୱରୂପ ତତ୍ରତ୍ୟ ଇଂରାଜୀ ସ୍କୁଲର ହେଃ ମାଷ୍ଟର ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ ଦାସଙ୍କୁ ପଠାଇଥିବା କଥା ପ୍ରକାଶ କରିଅଛନ୍ତି ।

ଅଠଗଡ଼
୨୮-୩-୧୮

ମାନନୀୟ ମହାଭାଗ,

ମୋହର ଶାରୀରିକ ଅସୁସ୍ଥତାଯୋଗୁ ମୁଁ ସମ୍ମିଳନୀରେ ଉପସ୍ଥିତ ହୋଇ ନ ପାରି ଦୁଃଖିତ ହେଉଅଛି, ମାତ୍ର ବର୍ତ୍ତମାନ ଦେଶର ଅବସ୍ଥା ଓ ବସ୍ତ୍ରର ଦୁର୍ମୂଲ୍ୟତା ଯେପରି ଧୀରେ ୨ ବୃଦ୍ଧି ହେଉଅଛି ତା ଦୃଷ୍ଟିରେ ଆମ୍ଭମାନଙ୍କ ଦେଶରେ ଗୋଟିଏ ବସ୍ତ୍ରବୟନର କାରଖାନା ପ୍ରତିଷ୍ଠା କରିବା ଆବଶ୍ୟକ ବୋଧ ହେଉଅଛି । ଯଦି ଆପଣ ମୋର ଏହି ପ୍ରସ୍ତାବରେ ସମ୍ମତ ହୁଅନ୍ତି ତେବେ ସମ୍ମିଳନୀରେ ମୋହ ତରଫରୁ ଆପଣ ଏହି ପ୍ରସ୍ତାବ ଉପସ୍ଥାପିତ କରିବାହେବେ । ଏହି କାର୍ଯ୍ୟରେ କେତେ ଟଙ୍କା ବ୍ୟୟ ହେବ ମୁଁ ଜାଣୁନାହିଁ, ମାତ୍ର ଏହାର ପ୍ରତି ଅଂଶ ଟ ୧୦୦ ଙ୍କା ହିସାବରେ ସ୍ଥିର କରି ଟଙ୍କା ସଂଗ୍ରହ କରିବାକୁ ହେବ । ମୁଁ ମଧ୍ୟ ଏକଶତ ଅଂଶ ଅର୍ଥାତ୍ ଟ ୧୦,୦୦୦୲ (ଦଶହଜାର) ଦେବାକୁ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ରାଜା, ମହାରାଜା, ଜମିଦାର, ଧନୀ ଓ ବ୍ୟବସାୟୀମାନେ କେତେଅଂଶ କେଉଁମାନେ ନେବେ ତାର ଲିଷ୍ଟ ବିଜ୍ଞାପନ ଦେଇ ସଂଗ୍ରହ କଲା ପରେ ଏହାର କାର୍ଯ୍ୟାରମ୍ଭ ହେବ । ଏହାର ପରିଦର୍ଶକ ଓ କର୍ମଚାରୀମାନେ ଆପଣ ସ୍ଥିର କରିବାହେବେ । ଏହି ବ୍ୟବସାୟର କେନ୍ଦ୍ର କଟକରେ ପ୍ରତିଷ୍ଠିତ ହେବ । କପାଗଛର ବୃଦ୍ଧି ସମ୍ବନ୍ଧେ ସମ୍ମିଳନୀ ତରଫରୁ ରାଜା ଓ ଜମିଦାରମାନଙ୍କୁ ଅନୁରୋଧ କରିଯିବା ସକାଶେ ମୁଁ ମଧ୍ୟ ପ୍ରସ୍ତାବ କରୁଅଛି । ମୁଁ ମଧ୍ୟ କପାଗଛ ବୃଦ୍ଧି ବିଷୟରେ ଚେଷ୍ଟା କରୁଅଛି ।

ଆମ୍ଭେମାନେ ଭଲରେ ଅଛୁଁ, ଆଶାକରେ ଆପଣ ଆପଣଙ୍କ ଜନ୍ୟ ସହିତ ସୁସ୍ଥ ଥିବେ । ଇତି ।

ଭବଦୀୟ ଅନୁଜ
ଶ୍ରୀ ବିଶ୍ୱନାଥ ।


Digitized by srujanika@gmail.com

ଖଡ଼ଗପୁର ଅନ୍ଜୁମାନର ଜନୈକ ସଭ୍ୟ ଲେଖିଅଛନ୍ତି ;—

ନିବେଦନ ଏହିକି ପୀଡ଼ିତଥିବାରୁ ମୁଁ ସଭାରେ ଉପସ୍ଥିତ ହୋଇପାରିଲି ନାହିଁ । ମୋହର ମନୋଗତ ଭାବ ନିମ୍ନରେ ବ୍ୟକ୍ତ କରୁଅଛି ଏବଂ ଆଶାକରେଁ ସଭାରେ ପଠିତ ହେଲେ କୃତାର୍ଥ ହେବି, ଏହି ପ୍ରାର୍ଥନା ।

(୧) ଆଜି ଓଡ଼ିଶାର ହିନ୍ଦୁ ଓ ମୁସଲମାନମାନେ ଯେଉଁ ବନ୍ଧନସୂତ୍ରରେ ଏ ସଭାରେ ଉପସ୍ଥିତ ହୋଇଅଛନ୍ତି ସେମାନଙ୍କ ମଧ୍ୟରେ ଭ୍ରାତୃସ୍ନେହ ଚିରକାଳ ରହିବା ବିଧେୟ ।

(୨) ପରସ୍ପର ବିରୁଦ୍ଧଭାବ ବର୍ଜନ କରି ଏକତା ରଜ୍ଜୁରେ ବଦ୍ଧ ହୋଇ କାର୍ଯ୍ୟ କରିବାପାଇଁ ଦୃଢ଼ପ୍ରତିଜ୍ଞ ହେବା ଏକାନ୍ତ ପ୍ରୟୋଜନୀୟ ।

(୩) ଉତ୍କଳ ଗୌରବ ରବି ଶ୍ରୀମାନ୍ ମଧୁସୂଦନ ଦାସଙ୍କୁ ମୋହର ଆନ୍ତରିକ ଧନ୍ୟବାଦ ଅର୍ପଣ ।

କାରଣ ୧୯୦୪ ସାଲରେ ମୁଁ ତାହାଙ୍କଠାରୁ ଉପଦେଶ ଗ୍ରହଣ କରି ମୋହର ଜୀବନର ଯେଉଁ କାର୍ଯ୍ୟମାନ କରିଅଛି, ତାହାଲାଗି ମୁଁ ତାହାଙ୍କୁ ଅହୋରାତ୍ର ପୂଜା କରୁଥାଏଁ । ତାହାଙ୍କର ଉପଦେଶ ବାଣୀ ମୋହର ଜୀବନରେ ସ୍ୱର୍ଗୀୟ ଅମୃତ ସଞ୍ଚାର କରିଦେଲା । ବର୍ତ୍ତମାନ ସେହି ବାଣୀକୁ ମନେକରି ମୁଁ କାର୍ଯ୍ୟ କରିବାକୁ ବାହାରିଲାକ୍ଷଣି ମୋହର ମନରେ ସ୍ୱତଃ ଏହା ଜାଗ୍ରତ ହୋଇ ଉଠେ ଯେପରି ସ୍ୱୟଂ Mr. Das ଛିଡ଼ାହୋଇ ମୋତେ କର୍ମାଙ୍ଗନକୁ ଟାଣୁଅଛନ୍ତି । ଖଡ଼ଗପୁର ଆଜି ସେଥିପାଇଁ ଧନ୍ୟ, ସେଠାରେ ଗୋଟିଏ ଅନ୍ଜୁମନ୍ (ସମାଜ) ସ୍ଥାପିତ ହୋଇ ତଦ୍ଦ୍ୱାରା ଧର୍ମସମ୍ବନ୍ଧୀୟ ଉନ୍ନତିସାଧିତ ହୋଇଅଛି ଏବଂ ହେଉଅଛି । ସେହି ଅନ୍ଜୁମନ୍ ତରଫରୁ ଜଣେ ଧର୍ମଶିକ୍ଷକ ନିଯୁକ୍ତ ହୋଇ ଓଡ଼ିଶାରେ ଧର୍ମଶିକ୍ଷା ବିସ୍ତାର କରୁଅଛନ୍ତି । ଏ ସବୁ କାର୍ଯ୍ୟ ଅନ୍ଜୁମନ୍ ହସ୍ତରେ ନ୍ୟସ୍ତ । ମୋହର ମତାନୁସାରେ ମୁଁ ପ୍ରାର୍ଥନା କରେଁ ସର୍ବେ ଆଜି ଧର୍ମସେବାରେ ଜୀବନ ଉତ୍ସର୍ଗ କଲେ ଅଶେଷ କଲ୍ୟାଣ ସାଧିତ ହେବ ।

ପୁରୁଲିଆରୁ ଶ୍ରୀଯୁକ୍ତ ବାବୁ ପଞ୍ଚାନନ ପାଣି, ମୁକ୍ତିଆର ଲେଖିଅଛନ୍ତି—

I am sorry to say that I have been attacked with fever and confined to bed for 7days. As I am an Oriya I should join the Conference and I had an intention to do so. But unfortunately I have been attacked with fever and still I have not taken food. I sympathise with you in the matter and hope to be excused for not joining the Conference for the cause stated above.

Digitized by srujanika@gmail.com

I was born and brought up in Manbhum, hence can not take in Oriya nor can I write. I was compelled to write to you in English and I beg to excused for it.

---

ଜାଃ ଗଞ୍ଜାମ, ପୋଃ ଅଃ ଦିଗୁପୁଡ଼ି, ଜୀଃ ଏସ୍ ସ୍କୁଲର ଛାତ୍ରମାନଙ୍କ ତରଫରୁ ଶ୍ରୀମାନ୍ ବାବୁ ଚୈତନ୍ୟ ସାହୁ ସମ୍ମିଳନୀର ପୂଜା ସ୍ୱରୂପ ଟ ୬ ୧ ପଠାଇଦେଇ ମନିଅର୍ଡର କୁପନରେ ଲେଖିଅଛନ୍ତି—

We the students of G. S. Schoool, Digupudi, present in spirit in the Conferences.

---

ମେଦିନୀପୁରସ୍ଥ ଚନ୍ଦ୍ରୀ ଚନ୍ଦ୍ରଶେଖରସ୍କୁଲ କମିଟିର ସମ୍ପାଦକ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ତ୍ରିପାଠୀ କାବ୍ୟତୀର୍ଥ ଲେଖିଅଛନ୍ତି ;

" ଅମୃତ ପିବାର ସମ୍ପୂର୍ଣ୍ଣ ଆଶାଥିଲା, କିନ୍ତୁ ଉପସ୍ଥିତ ଅମୃତ ସ୍ୱୀର ଯେଉଁପ ଅମୂଖ ଦେଖାଯାଉଅଛି ତହିଁରେ ଉପସ୍ଥିତ ହୋଇ ସମ୍ମିଳିତ ଭାଇମାନଙ୍କୁ ସାକ୍ଷାତ କରି ସମ୍ମିଳନୀରେ ଯୋଗଦେବା ଅସମ୍ଭବ । ଏଣୁ ନିତାନ୍ତ ଦୁଃଖିତରେ ଅଛୁଁ । ସମ୍ମିଳନୀର ନିର୍ଦ୍ଦିଷ୍ଟ ତାରିଖର ଦୁଇଦିନ ପୂର୍ବେ ଯଦି ଭଗବାନ ଏହାକୁ ନିରାମୟ କରିଦିଅନ୍ତି ତେବେ ନିଶ୍ଚୟ ଯାଇ ଯୋଗ ଦେବାର ବାସନା ରହିଲା । ସମ୍ମିଳନୀ ପ୍ରତି ଏ ଭାଇର ସମ୍ପୂର୍ଣ୍ଣ ଟାଣ ଓ ସହାନୁଭୂତି ଅଛି ଜାଣିବେ । କିମଧିକମିତି । "

ଅନୁଗୁଳରୁ ଶ୍ରୀଯୁକ୍ତ ହରିହର ମିଶ୍ର ବ, ଏ, ଲେଖିଅଛନ୍ତି ;—

"ଆପଣଙ୍କର ପ୍ରେରିତ ସମ୍ମିଳନୀ-ଆହ୍ୱାନପତ୍ର ଖଣ୍ଡିକ ପାଇଲି । ସଙ୍ଗେ ମନରେ ଏକ ଆନନ୍ଦ-ହିଲ୍ଲୋଳ ଉଠିଲା । ପରେ ଦୁଃଖ, ସୁଦୂର ଜଙ୍ଗଲ, ତହିଁରେ ପୁଣି ଦାସତ୍ୱ, ମାତୃପୂଜା ସଙ୍ଗେ ଭ୍ରାତୃମିଳନ ସୁଖ ମୋ ଭାଗ୍ୟରେ ବର୍ତ୍ତମାନ ବିଡ଼ମ୍ବନା । ମାତୃପୂଜାର ପଦକ ନାମରେ ଆପଣଙ୍କ ଠିକଣାରେ ଗୋଟିଏ ମାତ୍ର ଟଙ୍କା ମନିଅର୍ଡର ଯୋଗେ ପଠାଇଲି । ପୂଜୋପକରଣ ପାଇଁ ତାହା ଗୃହୀତ ହେଲେ ନିଜକୁ ଭାଗ୍ୟବାନ୍ ମନେ କରିବି । ମାତୃପୂଜା ମଣ୍ଡପରେ ମୋର ଅନୁପସ୍ଥିତି ମାର୍ଜନୀୟ । ଇତି ।"

ଗୁଡ଼ବାସାରୁ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ଉକିଲ ଲେଖିଅଛନ୍ତି—

" ମାତୃପୂଜା ପୀଠରେ ଯୋଗଦାନ କରିବାର ଆହ୍ୱାନ ପାଇଲି । ଏହି ଶୁଭ ଅନୁଷ୍ଠାନରେ ଯୋଗଦାନ କରିବି ବୋଲି ସମସ୍ତ ଆୟୋଜନ କରିଥିଲି, କିନ୍ତୁ ଦୁଃଖର ବିଷୟ ଘଟନାଚକ୍ରରେ ପଡ଼ି ଯିବାକୁ ଅସମର୍ଥ ହେଲି । ଆପଣ ଜାଣନ୍ତି ଯେ ଗୁଡ଼ବାସା ଜିଲାସ୍କୁଲ ଏହି ଜିଲ୍ଲାର ଏକମାତ୍ର ହାଇସ୍କୁଲ । ଏହି ଜିଲ୍ଲାର ଦରିଦ୍ର ଓଡ଼ିଆ ଛାତ୍ରମାନଙ୍କ ପାଇଁ ବହରମ୍ପୁର ଗୋଡ଼ାରେ ଗୋଟିଏ ନୂତନ ହାଇସ୍କୁଲ ସ୍ଥାପନ

Digitized by srujanika@gmail.com

